# ଗୀତି ଶତକ

ଆକାଶବାଣୀ ଓ ଦୂରଦର୍ଶନ ଦ୍ୱାରା
ସ୍ୱୀକୃତି ପ୍ରାପ୍ତ ଦେଶବନ୍ଦନା ଓ ଶିଶୁ ଗୀତିକା



ଡକ୍ଟର କୃତ୍ତିବାସ ନାୟକଙ୍କ
୬୨ ତମ ପ୍ରକାଶିତ ପୁସ୍ତକ

ISBN. 81-901015-0-14

ଅରୁଣ ତରୁଣ
ଶିଶୁ ସାହିତ୍ୟ ବିକାଶ ସମିତି
ରାଉରକେଲା

# ଗୀତି ଶତକ

ଗୀତିକାର ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ : ଅରୁଣ-ତରୁଣ □ ଶିଶୁ ସାହିତ୍ୟ ବିକାଶ ସମିତି, □ ରାଉରକେଲା □ ପ୍ରଥମ ପ୍ରକାଶ : ରଜ ସଂକ୍ରାନ୍ତି-୨୦୦୦ □ ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍ □ କଟକ □ କମ୍ପ୍ୟୁଟର ସହାୟତା : ଗ୍ରାଫିକ୍ ପଏଣ୍ଟ □ ରାଉରକେଲା □



# GEETI SHATAK

Lyricist : Dr. Kruttibas Nayak

Publisher : Arun-Tarun □ Children's Literature Dev. Society □ Regd. No. K-2627 - 66/96-97 □ Jagda □ Jhirpani □ Raurkela

Rs. 40/- only




ଓଡ଼ିଶାର ସ୍ୱନାମଧନ୍ୟ କଣ୍ଠଶିଳ୍ପୀ ତଥା କୁନି କୁନି ଶିଶୁମାନଙ୍କ ଉଦ୍ଦେଶ୍ୟରେ ଏହି ଗୀତି କବିତା ପୁସ୍ତକଟିକୁ ଉତ୍ସର୍ଗ କଲି ।

ସୁପ୍ତ ଅବସ୍ଥାରେ ଥିବା ଏହି ଗୀତ ଗୁଡ଼ିକୁ ସେମାନେ ଜାଗ୍ରତ କରି ରସ ପିପାସୁ, ଦେଶପ୍ରେମୀ ତଥା ଶିଶୁ ପ୍ରେମୀମାନଙ୍କ ହୃଦୟରେ ଆନନ୍ଦ ପ୍ରଦାନ କଲେ, ମୋର ଶ୍ରମ ସାର୍ଥକ ହେବ ।

କୃତ୍ତିବାସ ନାୟକ

ନାମ : ______________________

ଠିକଣା : ______________________

______________________

______________________

# ପିଲାଙ୍କ ପାଇଁ ଗୀତ

ମୋର ପ୍ରିୟ ପାଠକ / ପାଠିକାମାନେ ଅନୁଭବ କରିଥିବେ, ସୁଯୋଗ ଓ ଅବସର ମିଳିଲେ, ପିଲାମାନେ ଗୀତ ଗାଇଥାନ୍ତି । ସେହି ଗୀତ ଯଦି ତାଙ୍କ ଉପଯୋଗୀ ହୋଇ ନଥାଏ, ତେବେ ସଚେତନ ଗୁରୁଜନମାନଙ୍କୁ ଆନନ୍ଦ ପ୍ରଦାନ ପରିବର୍ତ୍ତେ ବିରକ୍ତି ଦାନ କରିଥାଏ । କେବଳ ଗୀତର ସ୍ୱରକୁ ଅନୁକରଣ କରି ମଧୁର କଣ୍ଠରେ ଗାଇଦେଲେ, ତାହା ସମସ୍ତ ଶ୍ରୋତାଙ୍କୁ ମୁଗ୍‌ଧ କରି ପାରେ ନାହିଁ । ମୁଁ ଲକ୍ଷ୍ୟ କରିଛି, ପିଲାମାନେ ଶିଶୁ ଉପଯୋଗୀ ଗୀତ ପାଇ ନପାରି ବାଧ୍ୟ ହୋଇ ବୟସ୍କମାନଙ୍କ ଉଦ୍ଦେଶ୍ୟରେ ରଚିତ ଗୀତକୁ ଗାଇଥାନ୍ତି । କେତେଜଣ ସଂଗୀତ ଶିକ୍ଷକ ନିଜେ ଶିଖିଥିବା କେତୋଟି ପାରଂପାରିକ ଗୀତକୁ ପିଲାଙ୍କୁ ଶିଖାଇ ଆତ୍ମ ସନ୍ତୋଷ ଲାଭ କରିଥାନ୍ତି । ଫଳରେ ପିଲାଙ୍କ ମନରେ ସୃଜନଶୀଳ ଭାବ ଜାଗ୍ରତ ହୋଇପାରେ ନାହିଁ । ବିଜ୍ଞାନ ଯୁଗର ପିଲାଙ୍କୁ ପରିବର୍ତ୍ତିତ ପରିସ୍ଥିତି ସହିତ ଖାପ ଖୋଇଲା ଭଳି ନୂତନ ଗୀତ ଯୋଗାଇ ଦେବା– ଆମ ସମସ୍ତଙ୍କର କର୍ତ୍ତବ୍ୟ । ଯାହାଦ୍ୱାରା ସେମାନେ ଅନୁଭବ କରିବେ–ଗୀତରେ ତାଙ୍କ କଥା ଅଛି, ଆଗେଇ ଯିବାକୁ ପ୍ରେରଣା ସେମାନଙ୍କୁ ମିଳିପାରୁଛି ।

୧୯୮୫ ମସିହାରୁ ୨୦୦୦ ମସିହା ଏପ୍ରିଲ୍ ମାସ ମଧ୍ୟରେ ରଚନା କରିଥିବା ଦେଶବନ୍ଦନା ଓ ଶିଶୁଗୀତିକା ଗୁଡ଼ିକୁ ଏକତ୍ର କରି କେବଳ ପିଲାଙ୍କ ଉଦ୍ଦେଶ୍ୟରେ ଏହି ପୁସ୍ତକଟିକୁ ସମର୍ପଣ କଲି । ଆଶା କରୁଛି – ପିଲାମାନେ ଏହାର ସଦୁପଯୋଗ କରିବେ ।

ବିନୀତ ଲେଖକ



# ସୂଚୀପତ୍ର



## ଦେଶ ବନ୍ଦନା



# ଶିଶୁ ଗୀତିକା



# ସରଗଠୁଁ ସୁନ୍ଦର

ସରଗଠୁଁ ସୁନ୍ଦର ଯେ    ସେଇ ମୋର ଗାଆଁଟି,
ବସୁଧାଠୁଁ ଓଜନ ଯେ    ସେଇ ମୋର ମାଆଟି ।
।ଘୋଷା ।

ସୁନା ଠାରୁ ଉଜ୍ଜ୍ୱଳ ଯେ    ଆମ ଗାଆଁ ସୂରୁଜ,
ହୀରା ଭଳି ଚିକ ଚିକ    ଚାହ୍ନ ଢାଳେ ମୁରୁଜ ।
ଯେତେ ଦେଖୁଥିଲେ ଦିଶେ –
ସବୁ ଦିନ ନୂଆଟି ।  ।୧ ।

ଘାସ ଗାଲିଚାଟି ସିନା    ଆମ ଗାଆଁ ପଡ଼ିଆ,
ପଡ଼ିଆକୁ ଲାଗି ତୋଟା    ଭରା ଆମ୍ବ ନଡ଼ିଆ ।
ସେ ତୋଟାରେ ଫଳଖାଏ –
ନାଲି ଥଣ୍ଟ ଶୁଆଟି ।  ।୨

ଯେଉଁ ନଈ ବହି ଯାଏ    ଆମ ଗାଆଁ ପାଖରେ,
ତା' ପାଣି ଅମୃତ ସିଏ    ରାଣୀ ନଈ ଯାକରେ ।
ନାଉରିଆ ବାହି ନିଏ –
ତା' ଉପରେ ନାହାଟି ।  ।୩ ।

ଗାଆଁର ଉତ୍ତର ଦିଗେ    ଦିଶେ ଯେଉଁ ପାହାଡ଼,
ଠିଆ ହେଇଛି ପାଚେରୀ    କରି ଶୀତ ଉହାଡ଼ ।
ଗାଆଁ ଠାକୁରାଣୀ ଆମ –
ସବୁ ଦିନ ସାହାଟି ।  ।୪ ।

ଯେଉଁ ବିଲ ବାଡ଼ି ହସେ    ଫୁଲ ଫଳ ଦେଇକି,
ତାହାରି ରେଣୁ ବୋଳିବି    ମଥାରେ ମୁଁ ନେଇକି ।
ସବୁଠୁଁ ମଧୁର ଲାଗେ –
ମୋ ଗାଆଁର ନାଆଁଟି ।  ।୫ ।



ଡକ୍ଟର କୃତ୍ତିବାସ ନାୟକ

# ଜାତିର ଗରବ

ଜାତିର ଗରବ ଗଉରବ ଗାଥା –
ଗାଇଯିବୁ – ଆମେ ଗାଇଯିବୁ,
ଜନନୀ ମହିମା ଧରଣୀ ବୁକୁରେ–
ଲେଖିଯିବୁ–ଲେଖି ଦେଇ ଯିବୁ । ।ଘୋଷା।

ସତ୍ୟ ଶାନ୍ତି ପ୍ରୀତି ଧରମର ନୀତି,
ଅହିଂସାର ଜୟ ଏ' ଜାତିର ଭିତ୍ତି।
ମାନବ ଜାତିର କାନେ କାନେ ପୁଣି –
ଶାନ୍ତିର ବାରତା କହିଦେବୁ । ।୧।

ବାହୁରେ ଆମର ଅସୀମ ଶକତି,
ବୁକୁ ତଳେ ଭରା ଜନନୀ ଭକତି।
ଜନମ ଭୂମିର ରଖିବୁ ମହତ –
ଯାତନା ପଛକେ ସହିଯିବୁ । ।୨।

ଧରମ ବଳରେ ହେବୁ ବଳିୟାନ,
ସତ୍ୟର ପ୍ରତିଷ୍ଠା ହେବ ଆମ ପଣ।
ଅନ୍ୟାୟ ଅନୀତି ଅଭାବ କଷଣ –
ଦୂରକୁ ଦୂରେଇ ନେଇଯିବୁ। ।୩।

# କୋଟିଏ ଯୁଗ

କୋଟିଏ ଯୁଗର ଅନ୍ଧାର ହଟାଇ –
ଆଲୋକ ଜଳାଇ ଦିଅ,
ସେହି ଆଲୋକରେ ଆଲୋକିତ ହେଉ –
ଆକୁମାରୀ ହିମାଳୟ । ।ଘୋଷା।

କେତେ ଜାତି କେତେ ଭାଷା,
ନାନା ରୀତି ବେଶ ଭୂଷା ।
ଅନେକରେ ଏକ ଏକରୁ ଅନେକ –
ଆମେ ସବୁ ଭାରତୀୟ । ।୧।

ଯେତେ ଧର୍ମ ସେତେ ମତ,
ସବୁରି ମୂଳରେ ସତ୍ୟ ।
ଗୋଟିଏ ମାଆର କୋଟିଏ ସନ୍ତାନ –
ଏହି ଆମ ପରିଚୟ । ।୨।

କିଏ ଜପେ ହରି ରାମ,
କିଏ ଗାଏ ଆଲ୍ଲା ନାମ ।
ଯୀଶୁ–ବୁଦ୍ଧ, ଜୈନ ନାହିଁ ଭିନ୍ନା ଭିନ୍ନ –
ସେ ନାମରେ ଦିଅ ଜୟ । ।୩।



ଡକ୍ଟର କୃତ୍ତିବାସ ନାୟକ

# ସକଳ ଧରମ

ସକଳ ଧରମ ମିଳନ ପୀଠ ଏ'–
ଭାରତ ଆମଞ୍ଚି ମାଆ,
ସେହି ମାଆ ସବୁ ଗୁଣେ ମନୋହର –
ଦିଶେ ସବୁଦିନ ନୂଆ । ।ଘୋଷା।
ମନ୍ଦିରେ ଶୁଭେ ଘଣ୍ଟା–ଶଙ୍ଖ ନାଦ –
ହରେ କୃଷ୍ଣ ହରେ ରାମ,
ମୂରତି ବସାଇ ଧୂପ–ଦୀପ ଦେଇ –
ହିନ୍ଦୁ ପୂଜେ ଭଗବାନ ।
ଗୀତା ପୁରାଣରେ ଈଶ୍ୱର ଖୋଜେ ସେ –
ଆଶ୍ରା କରି ଚଉବାହା । ।୧।
ଗୀର୍ଜାରେ ଶୁଭେ ଯୀଶୁ ପ୍ରଭୁ ହେ –
ତାରଣ କରତା ତୁମେ,
ହଜାଇ ଦିଅ ହେ, ମଜାଇ ଦିଅ ହେ –
ତୁମରି ଅମୃତ ପ୍ରେମେ।
ବାଇବେଲ ବାଣୀ ଅମୃତ କାହାଣୀ –
ଚଲାପଥେ ହୁଏ ସାହା । ।୨।
ସମଜିଦ୍ ଠାରୁ ଭାସି ଆସେ ସ୍ୱର –
ଆଲ୍ଲା ହୋ– ଆକବର,
କୋରାନର ବାଣୀ ଉଚ୍ଚ ସ୍ୱରେ ଗାଏ –
ମୁସଲିମ୍ ଭାଇ ମୋର ।
ସବୁ ଧରମର ମହିମା ଅପାର –
ଦେଖାଏ ସତ୍ୟର ରାହା । ।୩।



ଡକ୍ଟର କୃତ୍ତିବାସ ନାୟକ

# ଦିବସ ଦିବସ ଶିଶୁ ଦିବସ

ଦିବସ ଦିବସ ଶିଶୁ ଦିବସ-
ସବୁ ଦିନ ପରି ନୁହେଁ,
ଚାଚାଜୀ ଚାଚାଜୀ ନେହେରୁ ଚାଚାଜୀ-
ତାଙ୍କ ପରି ଚାଚା କିଏ ! (ଘୋଷା)



ଆମ ଦେଶପାଇଁ ସୁଖ ତେଜି ଦେଇ,
ସ୍ୱାଧୀନତା ଦେଲେ କେତେ ଦୁଃଖ ସହି ।
ପଣ୍ଡିତ ନେହେରୁ ଭାରତ ରତନ-
ଶିଶୁଙ୍କର ଧନ ସିଏ । ।।୧।।



ଶିଶୁ ସଙ୍ଗେ ମିଶି ହୁଅନ୍ତି ସେ ଖୁସି,
ଗୁଲୁ ଗୁଲୁ କଥା କହନ୍ତି ସେ ହସି ।
ଆଜି ମୁଁ ଚାଚାଙ୍କ ଜନମ ଦିନରେ
ଭକ୍ତି ଶ୍ରଦ୍ଧାଞ୍ଜଳି ଦିଏ । ।।୨।।



ସତ୍ୟର ପୂଜାରୀ ଶାନ୍ତିର ବାହକ,
ଦେଖିଲେ ସପନ ସୁନାର ଭାରତ ।
ବିଶ୍ୱ ବନ୍ଧୁପ୍ରୀତି ପଞ୍ଚଶୀଳ ନୀତି
ଶାନ୍ତିର ବାରତା କହେ । ।।୩।।



କିଣି ନେଲେ ମନ କୋଟି କୋଟି ପ୍ରାଣ,
ଜାତୀୟ ହୃଦୟେ ଦେଲେ ଜାଗରଣ ।
ମନଟା ତାଙ୍କର ସାଗରଠୁଁ ବଡ଼
ଯଶ ହିମାଳୟ ଛୁଏଁ । ।।୪।।



ଠକ୍କୁର କୃତ୍ତିବାସ ନାୟକ

# ଜାଗରେ ଜାଗରେ

ଜାଗରେ ଜାଗରେ ଜାଗରେ-
ଜାଗରେ ଜାଗରେ ଜାଗରେ,
ଭାରତ ମାତାର ବୀର ସନ୍ତାନ-
ଜାଗରେ ଜାଗରେ ଜାଗରେ । (ଘୋଷା)



ଅଇରି ଛୁଇଁଛି ମାଆର ମାଟି,
ବୁକୁରେ ରକତ ଉଠିଛି ତାତି ।
ଦେଶର ହିତେ ଲଢ଼ିବ ଯିଏ-
ଆଗେଇ ଆସ ବେଗରେ । ।।୧।।



ରଖିବା ଆମେ ଜାତିର ପଣ,
ଜୀବନ ଦେଇ କରିବା ରଣ ।
ବଇରୀ ସଇନ ଶୃଗାଳ ଶିଶୁ-
ଆମେତ ସବୁ ବାଘରେ । ।।୨।।



ଲୁଚି ଛପିକରି ଆସିଛି ଯିଏ,
ଜାଣିବ ଆମର ବଇରୀ ସିଏ ।
ବିଜୟର ଟୀକା ଲଗାଇ ମଥାରେ-
ମାରିବୁ ତାକୁ ବାଗରେ । ।।୩।।



# ଛବିଶ ଜାନୁଆରୀ ଆସିଛି

ଛବିଶ ଜାନୁଆରୀ ଆସିଛି-
ଛବିଶ ଜାନୁଆରୀ,
ଉଚ୍ଚ ଆକାଶେ ଉଡ଼େ ତ୍ରିରଙ୍ଗା-
ବଜାଅ ଭେରୀ ତୁରୀ । (ଘୋଷା)



ଏହିଦିନ ସତେ କେଡ଼େ ସରସ, ଆହା କେଡ଼େ ସରସ,
ଗଣରାଜ୍ୟ ହେଲା ଆମରି ଦେଶ, ଆହା ଆମରି ଦେଶ ।
ଆମ ଦେଶରେ ଆମେ ଶାସକ-
ଆମେ ତ କର୍ମଚାରୀ । ।।୧।।



ସମ୍ବିଧାନ ଦେଲେ ଆମ୍ବେଦକର, ଆହା ଆମ୍ବେଦକର,
ଜନତାର ହେଲା, ଏ' ସରକାର, ଆହା-ଏ'ସରକାର ।
ଆମରି ଦେଶ ଗଢ଼ିବା ଆମେ-
ରକତ ପାଣି କରି । ।।୨।।



ନାହିଁ ଭେଦଭାବ ନାହିଁ ମାଲିକ, ଆହା- ନାହିଁ ମାଲିକ,
ଲିଭିଲା ପୋଥିରୁ ମଣିମା ଡାକ- ଆହା ମଣିମା ଡାକ ।
ସଭିଁଏ ଆମେ ସମାନ ହେଲୁ-
ଭାଇ ଭଉଣୀ ପରି । ।।୩।।





ଡକ୍ଟର କୃତ୍ତିବାସ ନାୟକ

# ଆମେ ଭାରତୀୟ

ଆମେ ଭାରତୀୟ  କରୁ ନମସ୍କାର  ହାତ ଯୋଡ଼ି ଗୁରୁଜନେ,
ଆଉ କେହି କରେ  ଭୂମିଷ୍ଠ ପ୍ରଣାମ  ନମି ତାଙ୍କରି ଚରଣେ ।(ଘୋଷା)



ପଶ୍ଚିମ ଅଞ୍ଚଳେ   ରାମ  ରାମ କହି,
ମାଳୟରେ ନାକ  ଘଷା ଘଷି ହୋଇ ।
ବ୍ରହ୍ମଦେଶେ ପୁଣି   ବନ୍ଧୁକୁ ଭେଟିଲେ-
ଆଦରନ୍ତି ସେ ଚୁମ୍ବନେ ।   ।।୧।।



ତାସ୍‌ମାନିଆଁରେ  ଶୁଙ୍ଘାଶୁଙ୍ଘି ଚାଲେ,
ଫିଲପାଇନ୍‌ରେ   ଗୋଡ଼ ଟେକି ଧୀରେ-
ଗୁରୁଜନଙ୍କୁ ସେ  ଦିଅନ୍ତି ସମ୍ମାନ-
ଦେଇ ଦୁଇହାତ କାନେ।   ।୨।।



ମିଶର ଦେଶରେ   ବିଚିତ୍ର ଚଳଣି,
ଖରାଟା କିପରି   ପଚାରନ୍ତି ପୁଣି ।
ଇଂରାଜୀ ପିଲାଏ   ଗୁଡ୍‌ମର୍ଣିଂରେ-
ସଲାମ୍‌ରେ ପାକିସ୍ଥାନେ ।   ।।୩।।



# ଆମେ ସେଇ ମାଟିର ପିଲା

ଆମେ ସେଇ ମାଟିର ପିଲା,
ଯାହାର ଇତିହାସ ଗରବ    ଗଉରବରେ ଭରା ।    (ଘୋଷା)

◆

ଯେଉଁଠି ଜନ୍ମି ଲକ୍ଷ୍ମଣବୀର    ସହୀଦ ହୋଇ ହେଲା ଅମର ,
ଯେଉଁ ଭୂଇଁରେ ବକ୍‌ସି    ଜଗବନ୍ଧୁ ଲଢ଼ିଥିଲା ।    ।।୧।।

◆

ଯା'ର ସନ୍ତାନ ଦଳ ବେହେରା    ଇଂରେଜଙ୍କୁ ନଦେଲା ଧରା ,
ସାମାନ୍ୟ ଏକ ନାଉରୀ ପାଇଁ    ମଥା ପ୍ରଦାନ କଲା ।    ।।୨।।

◆

ଯେଉଁଠି ଲଢ଼ି ବୀର ବାଜୁତ    ଗୁଳିରେ ମରେ ବାଜିରାଉତ ,
ଧରମା ବାରଶହ ବଞ୍ଚାଇ    ସାଗରେ ଝାମ୍ପ ଦେଲା ।    ।।୩।।

◆

ଶକତ ହୁଅ , ରକତ ଦିଅ    ତା' ପ୍ରତିଦାନେ ସ୍ୱାଧୀନ ନିଅ ,
ଯେଉଁଠି ଦିନେ ନେତାଜୀ ସାଜି    ସୁଭାଷ ଡାକ ଦେଲା ।    ।।୪।।

◆

ବାଇମୁଣ୍ଡି ଯେ କେଡ଼େ ମହାନ    ସାରା ଜୀବନ ସଞ୍ଚିତ ଧନ ,
ରାଜାଙ୍କୁ ଦେଇ ବନ୍ଧ ଗଢ଼ାଇ    କଟକ ରକ୍ଷା କଲା ।    ।।୫।।

◆

ବାର ବରଷେ ଶିଳ୍ପୀ ବାରଶ    ଗଢ଼ିଲେ ଯେଉଁ କୀରତି ଯଶ ,
ସେହି କୋଣାର୍କ କଳା କୁଶଳ    ଜଗତ ମୋହି ଦେଲା ।    ।।୬।।

◆

ବରଷେ ଥରେ ବଡ଼ ଦାଣ୍ଡରେ    ଯେଉଁଠି ଦିନେ ବସି ରଥରେ ;
ଜନତା ପ୍ରଜାମାନଙ୍କ ମେଳେ    ମିଳନ୍ତି ଚକା ଡୋଳା ।    ।।୭।।

◆◆



ଡକ୍ଟର କୃତ୍ତିବାସ ନାୟକ

# ନୂତନ ସୂରଜ ଉଇଁଛି ଆଜିରେ

ନୂତନ ସୂରୁଜ ଉଇଁଛି ଆଜିରେ-
ନାଶି ଅମା ଅନ୍ଧକାର,
ଆଲୋକର ରେଖା ଦେଇଛିରେ ଦେଖା-
ହୁଅ ଏବେ ଆଗୁସାର । (ଘୋଷା)



ଆମର ଜୀବନେ ଆଦରଶ ହେଉ-
ଗାନ୍ଧୀ ସୁଭାଷ ଶାସ୍ତ୍ରୀଜୀ,
ନିଜ କଥା ଭୁଲି ଗଢ଼ିଲେ ଯେ ଦେଶ-
ଲଗାଇ ଜୀବନ ବାଜି ।
ନିଜେ ଜଳି ଯିଏ ଆଲୋକ ଦେଖାଏ-
ଧନ୍ୟ ଜୀବନ ତାହାର । ।।୧।।



ଏକତାର ଖମ୍ବ ସତେ କେଡ଼େ ଦମ୍ଭ-
ଭାଙ୍ଗିବାକୁ ବଳ କା'ର,
ମଇଁଷିର ଶିଙ୍ଗ ଦିଶେ ସିନା ଫଟା-
ଯୁଦ୍ଧ ବେଳେ ସେ ପଥର ।
ସତ୍ୟ ଧର୍ମ ପାଇଁ ଲଢ଼ିବାରେ ମିଶି-
ଥାଉ ଯେତେ ମନାନ୍ତର । ।।୨।।



## ଜୟ ତୁ
## ଉତ୍କଳ ଜନନୀ

ଜୟ ତୁ ଉତ୍କଳ ଜନନୀ    ବନ୍ଦେ ତୋର ଚରଣ,
ବୀର ପ୍ରସବିନୀ ମାତା ଗୋ   ମୋ ପୂଜା ଅର୍ଘ୍ୟ ଘେନ । (ଘୋଷା)



ମନ୍ଦିର ମାଳିନୀ ତୁହି ମା'    କେତେ ନଦୀ ତୋ' ହାର,
ତୋ' ପରଶ ପାଇବା ପାଇଁ  ଫୁଲି ଧାଏଁ ସାଗର ।
ତୋ' କୋଳେ ଜନମିଛି ମୁହିଁ-
ସତେ କି' ଭାଗ୍ୟବାନ !  ।।୧।।
ସୌନ୍ଦର୍ଯ୍ୟର ଗନ୍ତାଘର ତୋ' ଚିଲିକା ପାଏ ଶୋଭା,
ବଣ ପାହାଡ଼ ତୋ' ସମ୍ପଦ  କୋଣାରକ କି' ଲୋଭା !
ଇତିହାସ ତୋର ଗାଉଛି-
ବୀର କାହାଣୀ ମାନ ।   ।।୨।।



ସଉଭାଗ୍ୟବତୀ ମାତା ଗୋ    କୋଳେ ବଡ଼ ଠାକୁର,
ତୋର ମାଟି ସିନା ପବିତ୍ର    ତୋର ସନ୍ତାନ ବୀର ।
କଳା କଉଶଳେ କିଏ ବା-
ହେବ ତୋର ସମାନ !   ।।୩।।





ଡକ୍ଟର କୃତ୍ତିବାସ ନାୟକ

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ ଜୟ ବୀର ପ୍ରସବିନୀ-
ଯା'ର ପଦ ଧୁଏ ଦିବା ନିଶି ସାଗର,
ମହାନଦୀ ଗଳାହାର ନଦନଦୀ ଅଳଙ୍କାର-
ବୀର ନାମେ ଇତିହାସ ଭରା ଯାହାର,
ନେତା ଯା'ର ଶ୍ରୀଜଗନ୍ନାଥ,
ସେଇ ମୋ ଜନମ ଭୂଇଁ ଉତ୍କଳ ମାତ । ।।୧।।

◆

ଯା' ସନ୍ତାନ ଖାରବେଳ ଗଜପତି ଓ କପିଳ-
ଦେଖାଇଲେ ବୀର ପଣ ରଖି ତା' ମାନ,
ବାରିଷ୍ଟର ମଧୁବାବୁ ବୁଦ୍ଧିରେ କରିଲେ କାବୁ-
ତା'ର ବୀର ବାଣୀ ସିଏ କରିଲେ ଗାନ ।
ଗୋପବନ୍ଧୁ ପରି ସେବକ,
ଦଳବେହେରା ଦେଲା ତା' ନିଜର ବେକ । ।।୨।।

◆

ବାଜିଆ କେଡ଼େ ବଳଟେ ଧରମା ଟିକି ପିଲାଟେ-
ରଖିଲେ ଯାହାର ଟେକ ଦେଇ ଜୀବନ,
ଦଣ୍ଡକା ଜଙ୍ଗଲେ ଥାଇ ସଭିଙ୍କୁ ଦେଲା ମନାଇ-
ଲକ୍ଷ୍ମଣ ନାୟକ ବୀର ଯା'ର ସମ୍ମାନ ।
ଲେଖିଗଲେ କବି ସମ୍ରାଟ,
ବଳଦେବ ଦୀନକୃଷ୍ଣ ସାରଳା ଗୀତ । ।।୩।।

◆

ଇଂରେଜ ଚମକି ଗଲା ଅଶୋକ ଧାର୍ମିକ ହେଲା-
ଦୟାନଦୀ ରଙ୍ଗା ହେଲା-ଯା' ବୀର ରଣେ,
ଖୋର୍ଦ୍ଧା ଦୁର୍ଗ ବାରବାଟୀ ନାମଶୁଣି ଥରେ ଛାତି-
ମାଟି ଛୁଇଁବାକୁ ଶତ୍ରୁ ବିପଦ ମଣେ ।
ପବିତ୍ର ତା' ଚରଣ ଧୂଳି,
ଆଜି ପବିତ୍ର ଦିନରେ ହୋଇବା ବୋଲି । ।।୪।।

◆◆



ଠକ୍କୁର କୃତ୍ତିବାସ ନାୟକ

# ଭାରତ ଦେଶେ ପୂରୁବ ଭାଗେ

ଭାରତ ଦେଶେ ପୂରୁବ ଭାଗେ ମହୋଦଧିର କୂଳେ,
କଳିଙ୍ଗ ଆଉ ଉତ୍କଳନାମେ ବିଖ୍ୟାତ ମହୀତଳେ (ଘୋଷା)

ଦିନେ ଯେ ଥିଲା ଗଙ୍ଗାଠାରୁ ଗୋଦାବରୀକୁ ବ୍ୟାପୀ,
ଯାହାର ଧୂଳି ମଥାରେ ବୋଳି ତରନ୍ତି ପାପୀ ତାପୀ ।
ସକଳତୀର୍ଥ ଜଗତନାଥ
ବସନ୍ତି ତା'ର କୋଳେ ।।୧।।

ବାରବାଟୀର ଭଗ୍ନସ୍ତୁପ ଧଉଳି ବରୁ ଣେଇ,
ଖୋର୍ଦ୍ଧାଗଡ଼ ସାକ୍ଷୀ ଦିଏ ତା' ବୀର ଗାଥା ଗାଇ
କୋଣାର୍କ ପୁଣି ଜଗତଜିତା
ତା' କଳା କଉଶଳେ ।।୨।।

ଏଇ ଉତ୍କଳ ପରଶ ପାଇ ନିଷ୍ଠୁର ଚଣ୍ଡାଶୋକ,
ଧରିଲେ ପରା ଧରମ ପଥ ହୋଇଲେ ଧର୍ମାଶୋକ ।
ରହିଛି ଖ୍ୟାତି ଧରମ ପାଇଁ
ରହିବ କାଳେ କାଳେ ।।୩।।

ବାଜି ରାଉତ ଲକ୍ଷ୍ମଣ ଭାଇ ରଖିଲେ ଜାତିମାନ,
ଧରମା ଆଉ ବାଇମୁଣ୍ଡି ଯେ କରିଲେ କେଡ଼େ କାମ !
ଜାତିର ପାଇଁ ଧନ-ଜୀବନ
ଦେଲେ ସେ ବଳେ ବଳେ । ।।୪।।

ମହାନ ଏଇ ଓଡ଼ିଆ ଜାତି ଗୌରବମୟ ଦେଶ,
ତ୍ୟାଗରେ ବୀର ରଣରେ ବୀର ବିଶ୍ୱରେ ଆଦରଶ,
ଧନ୍ୟ ହୋଇଛୁ ଜନମି ଆମେ
ପବିତ୍ର ଉତ୍କଳେ । ।।୫।।

◆◆



ଠକ୍କୁର କୃତ୍ତିବାସ ନାୟକ

# ଜନମଭୂଇଁ
# ମୋ
# କରମ ଭୂଇଁ

ଜନମ ଭୂଇଁ ମୋ  କରମ ଭୂଇଁ,
ଭାରତ ମୋ ପ୍ରିୟ  ଧରମ ଭୂଇଁ । (ଘୋଷା)

ସାଗର ଯାହାର ଚରଣ ଧୁଏ,  ଗଙ୍ଗା-ଯମୁନା ଯେ ଦେଶେବହେ ।
କୋଟି କୋଟି ପ୍ରାଣେ ଅମୃତ ଦେଇ । ।।୧।।

ହିମାଳୟ ଯା'ର ଶିରେ ମୁକୁଟ,  ଯୁଗ ଯୁଗ ଧରି ଜଗିଛି ବାଟ ।
ଧରମ ଭୂଇଁ ସେ କରମ ଭୂଇଁ ।  ।।୨।।

ଯା' କୋଳେ ଜନମି ଭୀମ ଅର୍ଜୁନ, ଭୀଷ୍ମ, ଦ୍ରୋଣ ଗୁରୁ ଆବର କର୍ଣ୍ଣ
ତା' ବୀର ଗୀତି ଗଲେ ଗାଇ ଗାଇ । ।।୩।।

ବାଲମିକ କାଳିଦାସ ଯେ କବି,  ସାରଳା ଆଙ୍କିଲେ ତୋ' ରୂପ ଛବି ।
ଧନ୍ୟ ସିଏ ତାଙ୍କୁ କୋଳରେ ପାଇ । ।।୪।।

ଯା' ପାଇଁ ଲକ୍ଷ୍ମଣ ଦେଲା ରକତ,  ଖୁଦିରାମ ବାଘା ବାଜିରାଉତ ।
ଇତିହାସ ବୀର ଗାଥା କହଇ । ।।୫।।

ରକତ ଦିଅହେ ଶକତି ଦିଅ,  ତା'ର ପ୍ରତିଦାନେ ମୁକତି ନିଅ ।
ନେତାଜୀ ଡାକିଲେ ଯେଉଁଠି ରହି । ।।୬।।

ସତ୍ୟ ଅହିଂସା ବିନା ରକତେ,  ଦେଖା ନଥିଲା ଯା' ଏହି ଜଗତେ ।
ଗାନ୍ଧୀ ଦେଲେ ଯା'ର ବନ୍ଧନ ଫେଇ । ।।୭।।

ହିନ୍ଦୁ ଶିଖ ଖ୍ରୀଷ୍ଟ ମୁସଲମାନ,  କଳା ଗୋରା କିଛି ନାହିଁ ବାରଣ ।
ଭାଇ ଭାଇ ସମ ବସନ୍ତି ଯହିଁ । ।।୮।।

ଜଗନ୍ନାଥ ପୁଣି ଯେଉଁ ଭୂଇଁରେ, ମିଳନ୍ତି ପରଜା ଦୁଃଖୀ ମେଳରେ
ଧନ୍ୟ ହୋଇଛି ମୁଁ ଯା' ମାଟି ଛୁଇଁ । ।।୯।।





ଡକ୍ଟର କୃତ୍ତିବାସ ନାୟକ

# ଏ' ଦେଶ ବୁକୁରେ

ଏ' ଦେଶ ବୁକୁରେ ଫୁଟି ଉଠେ ସିନା-
କୋଟି କୋଟି ଶତଦଳ,
ଏ' ଦେଶ ମାଟିରେ ବହିଯାଏ ପୁଣି-
ଗଂଗାର ଅମୃତ ଜଳ । (ଘୋଷା)



ଏ' ଦେଶ ସାଗରେ ଅନେକ ଲହଡ଼ି,
ଖୋଲିଦିଏ କେତେ କାହାଣୀର ପେଡ଼ି ।
ଏ' ଦେଶ ପାହାଡ଼ ଉଚ୍ଚ ପରବତ-
ବଢ଼ାଏ ମନର ବଳ । ।।୧।।



ଏ' ଦେଶ ଗରଭେ ଭରିଛି ରତନ,
ପାଷାଣରେ ପୁଣି ଭରିଛି ଜୀବନ ।
ଏ' ଦେଶ ପବନ ଗାଏ ସୁଧା ଗୀତି-
ମନ କରି ନିରିମଳ । ।।୨।।





ଡକ୍ଟର କୃତ୍ତିବାସ ନାୟକ

## ଗଉରବମୟୀ ପୁଣ୍ୟମୟୀ

ଗଉରବମୟୀ ପୁଣ୍ୟମୟୀ ତୁ-
ପବିତ୍ର ଉତ୍କଳ ଭୂଇଁ,
ତୋ' ପାଣି ପବନ ମାଟିର ମହିମା-
ଜଗତେ ତୁଳନା ନାହିଁ । (ଘୋଷା)



କଳା କଉଶଳେ ଜଗତ ଜିଣିଛୁ-
ଭଙ୍ଗା କୋଣାରକ କଥା କହେ,
ଖୋରଧା ପାଇକ ତତଲା ରକତ-
ତୋର ଶିରା ପ୍ରଶିରାରେ ବହେ ।
ତୋହର ଗରବ ବାରବାଟୀ ଦୁର୍ଗ -
ତୋ' ବୀର କାହାଣୀ ଦିଏ କହି । ।।୧।।



ଧଉଳି ପାହାଡ଼ ଆଉ ଦୟାନଦୀ-
ଯୁଗେ ଯୁଗେ କହେ ତୋ' କାହାଣୀ,
ତୋ' ପଦ ପରଶେ ଚଣ୍ଡାଶୋକ ଦିନେ-
ଗାଇଲା ତୋହର ଧର୍ମବାଣୀ ।
ଦୟାନଦୀ କୂଳେ କଳିଙ୍ଗ ସମର-
ଦେଖିଛି ପାହାଡ଼ ବରୁଣେଇ । ।।୨।।



ଧନ୍ୟ ତୁ ଉତ୍କଳ ଜନନୀ ମୋହର-
ଧନ୍ୟ ତୋର ଗଉରବ ଗାଥା,
ଇତିହାସ ନୁହେଁ ଗଗନ ପବନ-
ଧୂଳିମାଟି କହେ ତୋର କଥା ।
ତୋ' କୋଳେ ଜନମି ଧନ୍ୟ ମୋ ଜୀବନ-
ତୋ' ସେବାରେ ପ୍ରାଣ ଦେବି ମୁହିଁ । ।।୩।।



ଡକ୍ଟର କୃତ୍ତିବାସ ନାୟକ

# ବନ୍ଦେ ଭାରତ ଜନନୀ

**ବ**ନ୍ଦେ ଭାରତ ଜନନୀ-
ବନ୍ଦେ ଭାରତ ଜନନୀ,
ପୁଣ୍ୟମୟୀ ତୁ ଜନ୍ମଭୂମି ତୁ-
ଜନନୀ ଜନନୀ ଜନନୀ । (ଘୋଷା)



ମାଟି ତୋହର ମଥା ଚନ୍ଦନ,
ଅମୃତ ସତେ ପାଣି ପବନ
ଦୁଃଖ ଶୋକ ହାରିଣୀ । ।।୧।।



କାଶୀ ବୃନ୍ଦାବନ ମଥୁରା ପୁରୀ,
ଗଙ୍ଗା ଗୋଦାବରୀ ନଦୀ କାବେରୀ ।
ତୀର୍ଥମୟ ତ୍ରିବେଣୀ । ।।୨।।



ବୀର ଭୋଗ୍ୟା ତୁ କେଡ଼େ ମହାନ,
ରକତ ଢାଳେ ବୀର ସନ୍ତାନ ।
ବୀରସୁତ ଧାରିଣୀ । ।।୩।।



ତୁହି ମା' ଏକା ମର୍ତ୍ତ୍ୟ ସୁନ୍ଦରୀ,
ରୂପରେ ଗୁଣରେ କେ' ହେବ ସରି !
କୋଟି ପ୍ରାଣ ମୋହିନୀ । ।।୪।।





ଡକ୍ଟର କୃତ୍ତିବାସ ନାୟକ

# ସତ୍ୟ
# ଶାନ୍ତିପ୍ରିୟ

ସତ୍ୟ ଶାନ୍ତିପ୍ରିୟ ଆମେ ଭାରତୀୟ-
ଅହିଂସା ଆମର ନୀତି,
ମଇତ୍ରୀ ବଳରେ ପ୍ରଗତି ଆଣିବୁ-
ଧରମରେ ରଖି ପ୍ରୀତି । (ଘୋଷା)



ଗୋଟିଏ ମାଆର କୋଟିଏ ସନ୍ତାନ-
ଏକମନ ଏକ ପ୍ରାଣ,
ମୁକତି ମସାଲ ଭକତିର ଫୁଲ-
ନାହିଁ ଆମ ଭିନ୍ନାଭିନ୍ନ ।
ଶୁଣିବାକୁ ସିନା କେତେ କେତେ ନାଆଁ-
ଆମେ ତ ଗୋଟିଏ ଜାତି । ।।୧।।



ବନ୍ଧୁ ମୈତ୍ରୀ ପଣେ ଗଢ଼ିପାରୁ ଆମେ-
ପ୍ରେମର ତାଜମହଲ,
ଆମରି ହୃଦୟେ ମମତାର ସ୍ରୋତ-
ବହେ ମନ୍ଦାକିନୀ ଜଳ ।
ମାଟି ମାଆ ପାଇଁ ରକତ ଢାଳିବୁ-
ପତାଇ ଦେବୁ ଏ' ଛାତି । ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଗୋଟି ଗୋଟି ଆମେ

ଗୋଟି ଗୋଟି ଆମେ କୋଟିଏ ସନ୍ତାନ-
ଗୋଟିଏ ଆମରି ମାଆ,
ତାର କୋଳେ ଆମେ ସକଳେ ସମାନ-
ସଭିଙ୍କର ସେହି ସାହା । (ଘୋଷା)



ମାଆ ସିନା ସହେ ସନ୍ତାନର ଅଳି-
କୋଳେଇ କାଖେଇ ଧରି,
ମାତୃଭୂମି ଆଉ ମାତୃଭାଷା ଦୁଇ-
ସମାନ ମାଆର ପରି ।
ସବୁ ଦୁଃଖ ସହି ଦିଏ ସେ ଯୋଗାଇ-
ଯେତେବେଳେ ଲୋଡ଼ା ଯାହା । ॥୧॥



ମାଆର ମମତା ମାତୃଭାଷା କଥା-
ଲାଗେ ସିନା ମିଠା ମିଠା,
ଯୁଗ ଯୁଗ ଧରି ସହୁଛି ଯେ ଅଳି-
ତା' ଚରଣେ ଲାଗୁ ମଥା ।
କୋଟି ସନ୍ତାନର ଜନନୀ ଭାରତ-
ଦେଖାଏ ଧରମ ରାହା । ॥୨॥





ଡକ୍ଟର କୃତ୍ତିବାସ ନାୟକ

# କୋଟି ସନ୍ତାନର

କୋଟି ସନ୍ତାନର ଜନନୀ ଭାରତ-
ସତେ କାମଧେନୁ ପରା,
ତା' ଚିରେ ଫିଟିଛି ଗଙ୍ଗା ଯମୁନାର-
କେତେ ଯେ- ଅମୃତ ଧାରା । (ଘୋଷା)



କରୁଛି ପୂରଣ ମନର ବାସନା-
ଜଗାଇ ପରାଣେ ଆଶା,
ଫିଙ୍ଗି ଦେଇଛି ସେ କାଳର ଲହଡ଼ି-
ଭାଙ୍ଗିଛି ବଇରି ନିଶା ।
ଅରି ପାଇଁ ତା'ର ନୟନରେ ନିଆଁ-
ମୋ ପାଇଁ ମମତା ଭରା । ॥୧॥



ସରଗ ରାଇଜ କାମଧେନୁ ଇଏ-
ମରତେ କରିଛି ବାସ,
ହସରେ ତାହାର କୋଟି କୋଟି ପ୍ରାଣେ-
ଝରିପଡ଼େ ଖାଲି ହସ ।
ଭାରତ ଜନନୀ କାମଧେନୁ ପାଇଁ-
ଧନ୍ୟ ହୋଇଛି ଏ' ଧରା ॥୨॥



# ଭାରି ଭଲ ଲାଗେ ମୋତେ

ଭାରି ଭଲ ଲାଗେ ମୋତେ ଗାଇବାକୁ ଆଜି ସତେ-
ଜନନୀ ଜନମ ଭୂଇଁ ଗୀତିକୁ ।
କହିବାକୁ କାନେ କାନେ ଜଗାଇ ପୁଲକ ମନେ-
ତା'ର ଅହିଂସା ଧରମ ନୀତିକୁ ।(ଘୋଷା)



କେତେ ଜାତି କେତେ ଧର୍ମ ନାହିଁ ପୁଣି ଭିନ୍ନାଭିନ୍ନ,
ତୁଣ୍ଡରେ ଅନେକ ଭାଷା ହୃଦୟେ ଗୋଟିଏ ଆଶା ।
ସେହି ଏକା ଗଉରବ ବୁଣିଦିଏ ସଉରଭ-
କିଏ ସରି ହେବ ଏହି ଜାତିକୁ ? ।।୧।।



ହୋଇବି ଦେଶ ଭକତ ଦେବି ତା' ପାଇଁ ରକତ,
ଅବୁଝା ମନ ବୁଝାଇ ହାତକୁ ହାତ ମିଳାଇ ।
ରଖିବି ତା'ର ମହତ ମସ୍ତକ କରି ଉନ୍ନତ -
ଜଗାଇବି ଦେଶେ ଦେଶ ପ୍ରୀତିକୁ ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଭାରତ ମାତାର ସେବା ପାଇଁ ମୁହିଁ

ଭାରତ ମାତାର ସେବା ପାଇଁ ମୁହିଁ-
ଫୁଲଟିଏ ହୋଇ ଫୁଟିବି ।
ଗଳାର ମାଳାରେ ଜାଗା ନ ପାଇଲେ-
ଚରଣେ ତାହାର ଲୋଟିବି। (ଘୋଷା)



ଧୂପଟିଏ ଯଦି ହୁଏ ମୁଁ ଜୀବନେ-
ଜଳି ଜଳି ଦେବି ମହକ,
ସଳିତାଟି ହେଲେ ତା' ମୁଖ ଉଜ୍ଜ୍ୱଳ-
କରିବି ଜଳାଇ ଆଲୋକ ।
ଜନନୀର ହୃଦ ଶୀତଳତା ପାଇଁ-
ଚନ୍ଦନ ହୋଇ ମୁଁ ଉଠିବି । ॥୧॥



ରଖିବାକୁ ମାନ ଜନନୀ ସମ୍ମାନ-
ଲୋଡ଼ା ହୁଏ ଯଦି ରକତ,
ନ ଥିବ ଖାତିର ହେବି ଆଗଭର-
ସାଜିବି ମାଆର ଭକତ ।
ସେ ଜନନୀ ମୋର ମୁଁ ସନ୍ତାନ ତା'ର-
ତା' ସୁଖକୁ ନେଇ ବାଣ୍ଟିବି । ॥୨॥



# କେତେ
# ଜନମ

କେତେ ଜନମ ସାଧନା ଆଉ
କେତେ ଧରମ ବଳେ,
ହୋଇଛି ଧନ୍ୟ ପାଇ ଜନମ
ଭାରତ ମାତା କୋଳେ । (ଘୋଷା)



ତଳରେ ଥାଇ ହାତ୍ ବଢ଼ାଇ
ପାଏ ମୁଁ ଏଠି ଫଳ,
ଖୋଳିଲେ ପୁଣି କେତେ କେଜାଣି-
ବହେ ଅମୃତ ଜଳ ।
କୁହନ୍ତ କିଏ ଏମିତି ମାଟି
ଆଉ କେଉଁଠି ମିଳେ ? ॥୧॥



ସବୁ ଧରମ ଜାତି ବରଣ
ଏ' ପୀଠ ମିଳନର,
ସରଗପୁରୀ ନୁହିଁଇ ସରି
ରୂପ ଗୁଣରେ ତା'ର ।
ଆମରି ପାଇଁ ଆମ ଜନନୀ
କେତେ ମମତା ଢାଳେ । ॥୨॥





ଡକ୍ଟର କୃତ୍ତିବାସ ନାୟକ

# ଆଉ
# ଥରେ ଯଦି

ଆଉ ଥରେ ଯଦି ଜନମ ଲଭେ ମୁଁ-
ଖୋଜିବି ଜନନୀ କୋଳ,
ସେବି ପାରିଲେ ମୁଁ ଭାରତ ଜନନୀ-
ପାଇବି ମୋ ପୁଣ୍ୟ ଫଳ । (ଘୋଷା)



ଜଗତେ ବିଖ୍ୟାତ ନାମଟି ଯାର,
ଗଉରବମୟୀ ଜନନୀ ମୋର ।
ହିମାଳୟ ଯାର ଶିରେ ମୁକୁଟ,
ସକଳ ଧରମ ମିଳନ ପୀଠ ।
ଝରିପଡ଼େ ଯହିଁ ମାଆର ମମତା-
ଗଙ୍ଗା ଯମୁନାର ଜଳ । ।।୧।।



ସତ୍ୟ ଶାନ୍ତି ଧର୍ମ ମଇତ୍ରୀ ବଳେ,
ଏଇ ଭାରତର ପ୍ରଦୀପ ଜଳେ ।
ଗାଉଥିବି ସଦା ଜନନୀ ଗାଥା,
ତା' ଚରଣେ ଢାଳି ମୋହର ମଥା ।
ସାର୍ଥକ ହୋଇବ ଜୀବନ ମୋହର-
ହୋଇଲେ ତା' ପୂଜାଫୁଲ । ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଭାରତ ଜନନୀ

ଭାରତ ଜନନୀ   କୋଳରେ ଜନମି-
କେଡ଼େ ଭାଗ୍ୟବାନ ମୁହିଁ,
ମୋ ଦୁଃଖରେ ଦୁଃଖୀ   ମୋ ସୁଖରେ ସୁଖୀ-
ହୁଏ ମୋ ଜନମ ଭୂଇଁ । (ଘୋଷା)



ରଖିବାକୁ ମାନ   ଦେବିପଛେ ପ୍ରାଣ,
ସେବି ତା' ଚରଣ   ହେବି ମୁହିଁ ଧନ୍ୟ ।
ସବୁ ଦୁଃଖ କ୍ଳେଶ   ହୋଇଯାଏ ନାଶ-
ଜନନୀର ମୁଖ ଚାହିଁ ।   ।।୧।।



ଦେଇ ଫଳମୂଳ   ନଈନାଳ ଜଳ,
ମୋ ଦେହରେ ସିନା   ଦେଇଛି ସେ ବଳ ।
ଅଜାଡ଼ି ପଡ଼ିଛି   ମାଆର ମମତା-
ସବୁ ତ ମୋହରି ପାଇଁ ।   ।।୨।।



ଭଲ ପାଇବାକୁ   ଶିଖାଇଛି ମୋତେ,
ଯୋଗାଇ ଦେଇଛି   ଲୋଡ଼ା ଯାହା ଯେତେ ।
ରଖିବି ମହତ   ଦେଇ ମୁଁ ରକତ-
ତା' ଚରଣେ ମଥା ଥୋଇ ।   ।।୩।।





ଡକ୍ଟର କୃତ୍ତିବାସ ନାୟକ

## ଏଇ ଭାରତ ଜନନୀ ମୋର

ଏଇ ଭାରତ ଜନନୀ ମୋର,
କୋଟି ଜନମତ କେତେ ଧର୍ମଚିତ୍ତ-
କରିଛି ସେ ଏକାକାର । (ଘୋଷା)



ଇନ୍ଦ୍ରଧନୁ ତାର ସାତ ରଂଗ ଦେଇ,
ମେଘ ଆକାଶରେ ସଦେ ଚମକଇ ।
ସବୁ ଧରମର ମିଳନ ହେବାରୁ
ସିଏ କେଡ଼େ ମନୋହର । ।।୧।।



ବଗିଚାରେ ଫୁଟେ ନାନା ଜାତି ଫୁଲ,
ଦିଶେ କି' ସୁନ୍ଦର ଗୁନ୍ଥି ଦେଲେ ମାଳ ।
ସବୁ ଭାଷା ମିଶି ମାଳାଟିଏ ଗଢ଼ା-
ଜନନୀର ଗଳାହାର । ।।୨।।



ଧୂଳିକଣା ମିଳି ଗଢ଼ିଛି ସଂସାର,
ଟିକି ଜଳକଣା ମିଶି ହୁଏ ଝର ।
ଆମେ ସିନା ସବୁ ଟିକି ଜଳ ବିନ୍ଦୁ-
ଭାରତ ମାତା ସାଗର । ।।୩।।





ଡକ୍ଟର କୃତ୍ତିବାସ ନାୟକ

## ଏ ଦେଶ ଗରବ

ଏ' ଦେଶ ଗରବ ଗଉରବ ଗାଥା-
ଜଗାଏ ପୁଲକ ଚିତ୍ତେ,
ଆକାଶ ସାଗର ଧୂଳିମାଟି ଗାଏ-
ଏ' ଦେଶ ମହିମା ଯେତେ । (ଘୋଷା)



ଉଚ୍ଚ ହିମାଳୟ ଟେକି ତା'ର ମଥା-
କହେ ଆକାଶର କାନେ,
ସାଗର ଢେଉ ତା' ଗୁଣ ଗାଇ ଗାଇ-
ନାଚେ ଅମାନିଆ ମନେ ।
ଭଉଁରୀ ଖେଳୁଛି ଗାଇ ତା'ର ଗୀତି-
ଗଗନେ ପବନ କେତେ । ॥୧॥



ଆକାଶର କୋଳେ ମେଘ ଭାସିଗଲେ-
ହସି ଦେଉଛି ବିଜୁଳି,
ସୁରଭି ପରାଏ ଫଗୁ ହୋଇଉଡ଼େ-
ମୋର ମାଟି ମାଆ ଧୂଳି ।
କୁଳୁକୁଳୁ ହୋଇ ଏ' ଦେଶ ତଟିନୀ-
ଗାଉଛି ବନ୍ଦନା ସତେ । ॥୨॥



ଡକ୍ଟର କୃତ୍ତିବାସ ନାୟକ

# ଆଜି ମୁଁ
# କରିଛି ଶପଥ

ଆଜି ମୁଁ  କରିଛି ଶପଥ
ଢାଳି ଦେବି ମୋର ରକତ ।
ଜନନୀର ପାଇଁ  ସମର୍ପି ଜୀବନ
ତା' ଶିର କରିବି ଉନ୍ନତ ।(ଘୋଷା)



ମୋର ପାଇଁ ସିନା  ଜନନୀ ମମତା-
ଝରିପଡ଼େ ହୋଇ ଜଳ,
ମୋ ପାଇଁ ଆହାର  ଯୋଗାଇ ଦେଉଛି-
ନାନା ଜାତି ଶସ୍ୟ ଫଳ ।
ଯାହାକୁ ମାନିଛି  ମାଆ ବୋଲି ମୋର-
ସେ ପୁଣ୍ୟ ଭୂମି ଭାରତ ।  ॥୧॥



ଯା' ପାଣି ପବନ  ଅମୃତ ସମାନ-
ବହିଯାଏ ମୋର ପାଇଁ,
ହୋଇ ପୂଜା ଫୁଲ  ପୂଜିବି ପୟର-
ସେ ପରା ମୋ ତୀର୍ଥ ଭୂଇଁ ।
[illegible] ସି  [illegible]ରେ ବସି-
ଗାଇ ଜନନୀ ଚରିତ ।  ॥୨॥





ଡକ୍ଟର କୃତ୍ତିବାସ ନାୟକ

ଭାରତ
ମାତାର
ସନ୍ତାନ ଆମେ

**ଭା**ରତ ମାତାର ସନ୍ତାନ ଆମେ-
ଆମେ ଏ' ଜାତିର ସେବକ,
କୋଟି କୋଟି ପ୍ରାଣେ ପୁଲକ ଜଗାଇ-
ବିଶ୍ୱ ପ୍ରାଣେ ଦେବୁ ଆଲୋକ । (ଘୋଷା)



କେତେ ଜାତି କେତେ ଧରମ ନେଇ,
ଗଢ଼ା ଏ' ଭାରତ ସବୁରି ପାଇଁ ।
ସତ୍ୟ ଶାନ୍ତି ପ୍ରେମ ଗଙ୍ଗା ହୋଇ ବହେ-
ହିମାଳୟ ଏଠି ସୈନିକ । ।।୧।।



ପର ସେବା ଏଠି ବଡ଼ ଧରମ,
ରକତ ଦାନଟି ବଡ଼ କରମ ।
ପ୍ରାଣ ଥିବା ଯାଏ ରଖି ତା' ମହତ
ହେବୁ ସତ୍ୟ ଧର୍ମ ରକ୍ଷକ । ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଆମେ ଭାରତର

ଆମେ ଭାରତର ବୀର ସଇନ,
ଆମେ ରଖିବୁ ମାଆର ସମ୍ମାନ । (ଘୋଷା)



ଶକତି ଆମର ଅହିଂସାର ଅସ୍ତ୍ର,
ଗାଇ ଥାଉ ଆମେ ମଇତ୍ରୀର ମନ୍ତ୍ର ।
ସାଜି ପାରୁ ଆମେ ଶାନ୍ତିର ଦୂତ-
ବାଜି ଲଗାଇ ଏ' ଜୀବନ । ।।୧।।



ଅଟଳ ଆମେ ତ ଧରମ ପଥରେ,
ହାରିଯିବୁ ପଛେ ଲଢ଼ିବୁ ସତ୍ୟରେ ।
ଏ' ଦେଶ ଆମର ଜନନୀ ଭାରତ-
ଆମେ ସବୁ ତା'ର ସନ୍ତାନ । ।।୨।।



ଦେଶ ବନ୍ଦନା ୩୦

# ସରଗ ଠୁଁ ବଡ଼

ସରଗ ଠୁଁ ବଡ଼ ମାତୃଭୂମି ମୋର-
ଏଇ ଭାରତ ବରଷ,
ଅମୃତ ସମାନ ତା' ପାଣି ପବନ-
ତା' ସରି କିଏ ସରସ ! (ଘୋଷା)



ଜାଣି ତା'ଗାରିମା ମହତ ମହିମା-
ସାଗର ଧୁଏ ଚରଣ,
ଜଗିଛି ଦୁଆର ହିମାଳୟ ତା'ର-
ଗଙ୍ଗା ପଶିଛି ଶରଣ ।
କେତେ ସୁର ବୀର ପୂଜି ତା' ପୟର
ଗଢ଼ିଛନ୍ତି ଇତିହାସ । ॥୧॥



ସତ୍ୟ ଶାନ୍ତି ପ୍ରେମ ଏ' ଜାତି ଧରମ-
ଆମେ ତା' ଭକତି ଫୁଲ,
ବିଶ୍ୱକୁ ପ୍ରେମରେ ଗଢ଼ିବା ଆମେରେ-
ପ୍ରୀତିର ତାଜମହଲ ।
ହସାଇ ଜଗତ ହସିବ ଭାରତ-
କୋଟି ପ୍ରାଣେ ଦେଇ ହସ । ॥୨॥





ଡକ୍ଟର କୃତ୍ତିବାସ ନାୟକ

# ଆମରି ଗରବ

ଆମରି ଗରବ   ଜାତୀୟ ପତାକା -
ଉଡ଼େ ଦେଖ ଫର ଫର,
ନାଲି ଧଳା ଆଉ   ସବୁଜ ରଙ୍ଗର-
ଦିଶେ  କେଡ଼େ ମନୋହର ।(ଘୋଷା)



ସତ୍ୟ ଶାନ୍ତି ଧର୍ମ   ଅଟେ ଯା'ର ମର୍ମ,
ମଝିରେ ଅଶୋକ ଚକ୍ରର ଚିହ୍ନ  ।
ଯୁଗ ଯୁଗ ଧରି   ଦେଉଥିବ ସିନା-
ଶାନ୍ତି ବାରତା ଆମର । ।।୧।।



ବୀର ଗୁଣ ସିନା   ନାଲିର ପ୍ରତୀକ,
ଧଳାଟି  ପବିତ୍ର   ଦେଖାଏ ଆଲୋକ ।
ସବୁଜ ରଙ୍ଗଟି   ଶାନ୍ତିର ବାହକ-
ଉଡ଼ି କହେ ନାହିଁ ଡର  ।   ।।୨।।



# ସୁପ୍ତ ମଶାଲେ
# ଦିପ୍ତ ଦେଇ

ସୁପ୍ତ ମଶାଲେ ଦିପ୍ତ ଦେଇ,
ତପ୍ତ ରକ୍ତର ଧମନୀ ନେଇ ।
ମୁକ୍ତ କଣ୍ଠେ ଯା' ବନ୍ଦନା ଗାଏ-
ସେ ଏକା ବ୍ୟାପ୍ତ ଶାକ୍ତଭୂଇଁ । (ଘୋଷା)



ତା' ପଦ ଛୁଇଁ ମୁଁ ତୃପ୍ତ ହେବି,
ତା'ର ସେବାରେ ମୁଁ ଲିପ୍ତ ଥିବି ।
ଲୁପ୍ତ ଆଜି ଯା' ଧ୍ୱସ୍ତ ବିଧ୍ୱସ୍ତ-
ପ୍ରାପ୍ତ ପାଇଁ ତା' ଲଢ଼ିବି ମୁହିଁ ।।୧।।



ଜାଗ୍ରତ ମୁହିଁ ଜନନୀ ଭକ୍ତ,
ଇସ୍ପାତ ପରି ହୋଇବି ଶକ୍ତ ।
ତିକ୍ତକାରୀଙ୍କୁ ରିକ୍ତ ହସ୍ତରେ-
ଦମନ କରିବି ଜନନୀ ପାଇଁ ।।୨।।



# ହାତେ ହାତ ଧରି

ହାତେ ହାତ ଧରି ଆସ ନର ନାରୀ-
ପାଦକୁ ପାଦ ମିଳାଇ,
ଜନନୀର ସେବା ପାଇଁ ପ୍ରାଣ ଦେବା-
ବଇରୀ ସାମନା ହୋଇ । (ଘୋଷା)



ଭାରତ ମାତାର ପୂଜାଫୁଲ ଆମେ-
ଏକ ଶ' କୋଟି ସନ୍ତାନ,
ଜାତି ଧର୍ମ ବର୍ଣ୍ଣ ନାହିଁ ତ ବାରଣ-
ସକଳେ ଆମେ ସମାନ ।
ଧରମ ପଥରେ କରମ କରିବା-
ଜୀବନେ ଶପଥ ନେଇ । ।।୧।।



ଗଢ଼ିବା ଏ' ଦେଶ ରଖିବା ତା' ଯଶ-
ବିଶ୍ୱକୁ ଦେଇ ଆଲୋକ,
କୋଟି କୋଟି ପ୍ରାଣେ ଅମୃତ ଲଗାଇ-
ଜଗାଇବାରେ ପୁଲକ ।
ଶାନ୍ତି ମୈତ୍ରୀ ବଳେ ଜଗତ ଜିଣିବା-
ସବୁରି ପ୍ରାଣ ହସାଇ । ।।୨।।



## ଜନମ ଦିନରୁ ଭଲ ପାଏ ତାକୁ

ଜନମ ଦିନରୁ ଭଲ ପାଏ ତାକୁ-
ସେହି ମୋ ଜନମ ଭୂଇଁ,
ତା' ପାଣି ପବନ ଅମୃତ ସମାନ-
ସବୁତ ମୋହର ପାଇଁ । (ଘୋଷା)



ତା'ର ବଣ ବିଲ ଯେତେ ଫୁଲ ଫଳ-
ବହିଯାଏ ଯେତେ ନଈ,
ପୂରୁବ ଆକାଶେ ଅରୁଣିମା ହସେ-
ମୋ ବୁକେ ହସ ଲଗାଇ ।
ମୋ ଦେଶର ଜୀବ ପଶୁ ପକ୍ଷୀ ରାବ-
ଶୁଭଇ ସଙ୍ଗୀତ ହୋଇ । ॥୧॥



ତା'ର ଧୂଳି କଣା ପ୍ରସାଦରେ ଗଣା-
ମଥାରେ ହେଉଛି ବୋଳି,
ତା' ମାନ ମହତ ଗର୍ବ ଗଉରବ-
ରଖିବି ରକତ ଢାଳି ।
ମୋତେ ଭଲପାଏ ମୁହିଁ ଭଲ ପାଏ-
ରହିବ ସନ୍ତକ ହୋଇ । ॥୨॥





ଡକ୍ଟର କୃତ୍ତିବାସ ନାୟକ

# କିଏ କହେ ମାଟି

**କି**ଏ କହେ ମାଟି ଜନମ ଭୂଇଁକୁ-
ମାଟି ନୁହେଁ ସିଏ ମାଆ,
ଜନମେ ମରଣେ ବିପଦେ ଆପଦେ-
ସେହି ସିନା ଏକା ସାହା । (ଘୋଷା)



ହିମାଳୟ ଠାରୁ କୁମାରିକା ଯାଏ-
ଆମେ କୋଟି କୋଟି ଭାଇ,
ଆମ ହାତ ଗଣ୍ଠି ଅତୁଟ ବନ୍ଧନ-
କେ' ଖୋଲି ପାରିବ ନାହିଁ ।
ଗଉରବମୟୀ ମମତାମୟୀ ଏ' -
ରଖିବା ତାହାରି ନାଆଁ । ॥୧॥



ବୁକୁରେ ଯାହାର ଅମୃତର ଝର-
ଗଙ୍ଗା ଆଉ ଗୋଦାବରୀ,
ଚରଣ ଯାହାର ଧୋଉଛି ସାଗର-
କେତେ ଯୁଗ ଯୁଗ ଧରି ।
କିଏ ହେବ ସରି ଆମ ମାଆ ପରି-
ଦେଖାଏ ଧରମ ରାହା । ॥୨॥



# କେଡ଼େ ପବିତ୍ର ଏ'

**କେ**ଡ଼େ ପବିତ୍ର ଏ' ଭାରତ ଭୂଇଁ,
ରାମ କୃଷ୍ଣଙ୍କର ଜନମ ଭୂଇଁ ।
ଧରମ ଭୂଇଁ ଏ' କରମ ଭୂଇଁ-
ମୋ ପାଇଁ ସତେ କି' ସରଗ ସେହି । (ଘୋଷା)



ନନ୍ଦନ କାନନ ଇନ୍ଦ୍ରର ଭୁବନ,
ମାଟି ମାଆ ସରି ହୋଇବେ କାହିଁ ?
ଅମୂଲ ମୂଲ ଗଙ୍ଗାର ଜଳ
ହିମାଳୟ ପରି କେହି ନୁହଇଁ । ।।୧।।



କୋଣାର୍କ ମନ୍ଦିର ତାଜମହଲର-
ଚାରୁ କଳା ଯା'ର ତୁଳନା ନାହିଁ
କେତେ ଧରମ କେତେ ବରନ-
ଜାତି ଅଜାତିର ମିଳନ ଭୂଇଁ । ।।୨।।





ଡକ୍ଟର କୃତ୍ତିବାସ ନାୟକ

## ଏ' ଦେଶ ଭାରତ

ଏ' ଦେଶ ଭାରତ ଜନନୀ ମୋହର
କିଏ ହେବ ତା'ର ତୁଲ,
ତା' ଘାଣି ପବନ ଅମୃତ ସମାନ୍
ମାଟି ତ ଅମୂଲ ମୂଲ । (ଘୋଷା)

◆

ମମତା ଯାହାର ଫୁଲ ହୋଇ ଫୁଟେ,
ସୁନାର ଫସଲ ତା' ବୁକୁରେ ଲୋଟେ ।
ପୂରୁବ ଆକାଶେ ଅରୁଣିମା ହସେ-
ଜନନୀ ମଥା ସିନ୍ଦୂର । ॥୧॥

◆

ମଉସୁମୀ ବାଆ ପଣତ ଉଡ଼ାଏ,
ହିମାଳୟ ଶୋହେ ମୁକୁଟ ପରାଏ ।
ଧନ ଜନ ଭରା ଜନନୀ ଭାରତ-
ସଂସାର ଭିତରେ ସାର । ॥୨॥

◆◆

# କୋଟି ଧର୍ମତୀର୍ଥ ଏ' ଭାରତ

**କୋ**ଟି ଧର୍ମତୀର୍ଥ ଏ' ମହା ଭାରତ-
ଜନନୀ ମୋ ଜନ୍ମ ଭୂଇଁ,
ଯୁଗେ ଯୁଗେ ଏଠି ଧର୍ମର ଜୟ-
ବୀର ରକ୍ତ ଯାଏ ବହି । (ଘୋଷା)



ପ୍ରଗତିର ରଥ ନାମ ନନ୍ଦିଘୋଷ-
ଗର୍ଜି ଉଠେ ପଞ୍ଚଜନ୍ୟ,
ସତ୍ୟ ରକ୍ଷା ପାଇଁ ଆମର ପ୍ରତିଜ୍ଞା-
ଅଟଳ ଅଟଳ ଭୀଷ୍ମ !
ଆମ ସେନାପତି ଦ୍ରୋଣ ବୀର କର୍ଣ୍ଣ-
ରଢ଼ି ଦିଏ ଭୀମ ରହି । ।।୧।।



ଜନନୀ ଗାନ୍ଧାରୀ ପାପ ନାଶ ପାଇଁ-
ଦିଏ ପୁଣି ବରାଭୟ,
ପଞ୍ଚପୁତ୍ର ଛାଡ଼ି ଛାତିକୁ ପଥର-
କରେ ଦ୍ରୌପଦୀ ହୃଦୟ ।
ସେଇ ଭାରତକୁ ଚଳାଏ ସାରଥୀ
ଶ୍ରୀକୃଷ୍ଣ ନାୟକ ହୋଇ । ।।୨।।





ଡକ୍ଟର କୃତ୍ତିବାସ ନାୟକ

# ପୁଣ୍ୟ ଏ'
# ଭାରତ ଭୂଇଁ

ପୁଣ୍ୟ ଏ' ଭାରତ ଭୂମି ଧନ୍ୟ ତା' କୋଳେ ଜନମି,
ଯୁଗ ଯୁଗ ଧରି ସାଗର ଯାହାର ଚରଣକୁ ଯାଏ ଚୁମି । (ଘୋଷା)



କିଏ ବା ନଜାଣେ ତା' ମାଟି ମହିମା-
ବୀର ଭୂମି ଏ' ଭାରତ,
ସୁଖ ସଂପଦରେ ଭରା ମୋର ଦେଶ-
କୋଟି କୋଟି ଧର୍ମ ତୀର୍ଥ ।
ସତ୍ୟ ଶାନ୍ତି ପ୍ରୀତି ଧର୍ମ ଯା'ର ନୀତି-
ବିଜୟିନୀ ସେ ଜନନୀ । ॥୧॥



ତା' ପାଣି ପବନ ଅମୃତ ସମାନ-
ସେ ମୋର ସାଧନା ପୀଠ,
ରଖିବି ତା' ମାନ ଦେଇ ଏ' ଜୀବନ-
ତା' ବୁକେ ଢାଳି ରକତ ।
ଧନ୍ୟ ହେବି ମୁହିଁ କରି ତା'ର ସେବା-
ଥରକୁ ଥର ଜନମି । ॥୨॥





ଡକ୍ଟର କୃତ୍ତିବାସ ନାୟକ

# କାଶ୍ମିର ଠାରୁ କୁମାରିକା ଯାଏ

**କା**ଶ୍ମିର ଠାରୁ  କୁମାରିକା ଯାଏ-
ଭାରତ ଏକ ସାଗର,
ପଚିଶଟି ନଦୀ  ବହେ ତା' ଭିତରେ,
ଆଉ ସାତ ଗୋଟି ଝର । (ଘୋଷା)



ଏହି ସାଗରରେ  ଭରିଛି ରତନ-
ହୀରା  ନୀଳା  ଆଉ ମୋତି,
ଉଠିଲେ ତରଙ୍ଗ  ଦିଶେ ବହୁ ରଙ୍ଗ-
କେତେ ଭାଷା କେତେ ଜାତି ।
ସଭିଙ୍କୁ ଆଦର  କରିଛ ସାଗର-
ନାହିଁ ପର ଆପଣାର ।  ।।୧।।



ଧରମ ବୋଇତ  ଭାସେ ସେ ସାଗରେ-
ଶାନ୍ତିର ବାରତା ଦେଇ,
ଅହିଂସାର ବାଣୀ  ମଇତ୍ରୀ କାହାଣୀ
ଯାଏ କାନେ କାନେ କହି ।
ତ୍ରିରଙ୍ଗା ପତାକା  ଆଣଇ ଏକତା-
ଉଡ଼ି ଫର ଫର ଫର ।  ।।୨।।





ଡକ୍ଟର କୃତ୍ତିବାସ ନାୟକ

# ନୂତନ ସୂର୍ଯ୍ୟରେ

ନୂତନ ସୂର୍ଯ୍ୟର   ଆଗମନେ ଆଜି-
ଧରା ହେବ   ଆଲୋକିତ,
ଧର୍ମର ମୁକୁଟ   ବିଶ୍ୱ ଜନନୀର-
ଶିରେ ହେବ ସୁଶୋଭିତ ।   (ଘୋଷା)



ସାଜିବା ଆମେରେ   ଶାନ୍ତିର ଦୂତ,
ଗାଇବା ଆମେରେ   ଅହିଂସା ମନ୍ତ୍ର ।
ହଟାଇବା ଆମେ  ଅସତ୍ୟ ଅନ୍ଧାର-
ସତ୍ୟ ହେବ ବିକଶିତ ।   ।।୧।।



ବାନ୍ଧିବା ଦୁନିଆ   ମୈତ୍ରୀ ବନ୍ଧନେ,
ଦେବା ନୂଆ ଆଶା  ଜଗତର ପ୍ରାଣେ ।
ସ୍ୱାଗତ ଦେବାରେ  ନବ ପ୍ରଭାତକୁ -
ହାତକୁ  ମିଳାଇ ହାତ ।   ।।୨।।





ଡକ୍ଟର କୃତ୍ତିବାସ ନାୟକ

## ମାଟି

## ମାଆ ଡାକେ

ମାଟି ମାଆ ଡାକେ   ହଟାଇ ଦିଅରେ-
ଅବିଶ୍ୱାସ ଅନ୍ଧକାର,
ମେଦିନୀ କଂପାଇ   ଜାଗିଛି ଆଜିରେ
ସଂହତିର ମହାଙ୍କୁର । (ଘୋଷା)



ଯେ ଶିଶୁ ବୃକ୍ଷରେ   ପ୍ରୀତି ଜଳ ଦେଲେ-
ପିଟିବ ଶାନ୍ତିର ଧାରା,
ସତ୍ୟ ସାର ପାଇ   ହେବ ମହାଦ୍ରୁମ-
ହସି ଉଠିବ ଏ’ ଧରା ।
ତା’ ଗହଳ ଛାଇ   ଲଭିବେ ସକଳେ-
ନଥିବ ଆପଣା ପର । ।।୧।।



ମୈତ୍ରୀ ପତାକା   ଉଡ଼ାଇ ଆକାଶେ-
ଗାଇବା ସାମ୍ୟର ଗୀତି,
ପରାଣେ ପରାଣେ   ପୁଲକ ଜାଗିବ-
ବଢ଼ାଇ ମାନବ ପ୍ରୀତି ।
ସେହି ମହାଦ୍ରୁମ   ଅମୃତ ପରଶେ-
ଦେବତା ସାଜିବେ ନର ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଚିର
# ବନ୍ଦନୀୟା

ଚିର ବନ୍ଦନୀୟା ତୁହି ମହନୀୟା-
ଜନନୀ ମୋ ଜନ୍ମଭୂମି,
ସକଳ ଧରମ କରିଛୁ ମିଳନ-
ଜନନୀ ମୋ ପୁଣ୍ୟ ଭୂମି । (ଘୋଷା)



ମୂରତି ସଜାଇ ଧୂପ ଦୀପ ଦେଇ ହିନ୍ଦୁ ପୂଜେ ଭଗବାନ,
ମନ୍ଦିରେ ଶୁଭେ ଶଙ୍ଖ ନିନାଦେ ହରେ କୃଷ୍ଣ ହରେ ରାମ ।
ମସଜିଦ୍ ଗୀର୍ଜା ଗୁରୁଦ୍ୱାରେ ପୁଣି -
ଶୁଭେ ତା'ର ପ୍ରତିଧ୍ୱନି । ।।୧।।



ମସଜିଦ୍ ଯାଇ ମୁସଲିମ ଭାଇ ପୂଜେ ତା'ର ଆଲ୍ଲା ପୀର,
ପବିତ୍ର କୋରାନ କରେ ଉଚ୍ଚାରଣ ବୋଲେ ଆଲ୍ଲା-ଆକବର ।
ନମାଜ ପଢ଼ି ସେ ଧନ୍ୟ ମଣିଥାଏ-
ଗାଇ ମହମ୍ମଦ ବାଣୀ । ।।୨।।



ଗୀର୍ଜାରେ ଶୁଭେ ଯୀଶୁ ପ୍ରଭୁହେ ଉଦ୍ଧାର କରତା ତୁମେ,
ହଜାଇ ଦିଅ ହେ ମଜାଇ ଦିଅହେ ତୁମରି ଅମ୍ଳାନ ପ୍ରେମେ ।
ସବୁ ଖ୍ରୀଷ୍ଟିୟାନ ମଣିଥା'ନ୍ତି ଧନ୍ୟ -
ଯୀଶୁ ଗୁଣ ଗୁଣି ଶୁଣି । ।।୩।।





ଡକ୍ଟର କୃତ୍ତିବାସ ନାୟକ

# ଜନମ ଭୂଇଁ ଏ' ମାଟି

ଜନମ ଭୂଇଁ ଏ' ମାଟି ମାଆ ମୋର-
ସରଗ ତା' ସରି ନୁହେଁ,
ଗଗନ ପବନ ଧୂଳି ମାଟି ଆଜି-
ଜନନୀ ମହିମା ଗାଏ । (ଘୋଷା)

◆

ନାଚି ନାଚି ଯାଏ ଟିକି ଝରଣାଟି-
କାଚ କେନ୍ଦୁ ଜଳ ଦେଇ,
ନାହିଁ ଭେଦଭାବ ନାହିଁ ତା' ଗରବ-
ସଭିଙ୍କୁ ଯାଏ ସେ ଛୁଇଁ ।
ଭାରତ ଜନନୀ ଗୌରବ କାହାଣୀ-
କାନେ କାନେ କହି ଯାଏ । ।।୧।।

◆

ଆମ ଜନନୀର ନଦୀ ଗଙ୍ଗାଧାର-
ଜାଣେନା ଧରମ ଜାତି,
ଜଣଙ୍କର ନୁହେଁ ସଭିଙ୍କର ସିଏ-
ଏହି ମୋ ମାଆର ନୀତି ।
ଏ' ଦେଶର ପାଇଁ ଅମୃତ ବରଷି-
କାଳିମାକୁ ଧୋଇ ନିଏ । ।।୨।।

◆

ରତନ ଭଣ୍ଡାର ମୋ ଦେଶ ସାଗର-
ଛୁଇଁଛି ଚରଣ ତା'ର,
ଏହି ଛୋଟବଡ଼ କେତେ ଯେ ପାହାଡ଼-
ମାଟି ମାଆ ଗନ୍ତାଘର ।
ଟେକି ଉଚ୍ଚମଥା ଆକାଶ କାନରେ-
ଗଉରବ ଗଥା କହେ । ।।୩।।

◆◆



ଡକ୍ଟର କୃତ୍ତିବାସ ନାୟକ

## ସକଳ କଳାର

ସକଳ କଳାର    ଉଚ୍ଛୁଳା ଚଞ୍ଚଳା-
ଜୟ ଉତ୍କଳ ଜନନୀ,
ଚାରୁ କଳାମୟୀ    ଚିର ହାସ୍ୟମୟୀ-
ଧନ୍ୟ ତୋ' କୋଳେ ଜନମି ।(ଘୋଷା)



କୋଳେ ଧରି    ମାତ ଜଗତର ନାଥ-
କେଡ଼େ ଗରିୟାନ ତୁହି,
ପୁଣ୍ୟ ବୈତରଣୀ ମହାନଦୀ ପୁଣି-
ସତୀ ନଂଦୀ ଯାଏ ବହି ।
ତୋହରି ପରଶେ    ପାପ ତାପ ନାଶେ-
ତୁହି ଭାରତର ମଣି ।    ।।୧।।



ପୂଜିବୁ    ଚରଣ ଗାଇବୁ ତୋ' ଗୁଣ-
ରଖିବୁ ତୋହର ମାନ,
ଲୋଡ଼ାହୁଏ ଯଦି    ଢାଳିବୁ ରକତ-
ବଳି ଦେଇ ଏ' ଜୀବନ ।
ତୋର ମଥା ମାତ କରିବୁ ଉନ୍ନତ-
ଶପଥ କରୁଛୁ ପୁଣି ।    ।।୨।।





ଡକ୍ଟର କୃତ୍ତିବାସ ନାୟକ

# ଜନମଭୂଇଁ
# ମୋ
# ନନ୍ଦନ କାନନ

ଜନମଭୂଇଁ ମୋ   ନନ୍ଦନ କାନନ-
ଫୁଟେ ଯହିଁ ପାରିଜାତ,
ଦିବସେ ସୂରୁଯ ରଜନୀରେ ଚାନ୍ଦ-
କରେ ତାକୁ ଆଲୋକିତ । (ଘୋଷା)



ଅଳି ମଧୁ ମକ୍ଷୀ   ଗୁଣୁ ଗୁଣୁ ହୋଇ,
କୁହୁତାନେ ପୀକ ଯାଏ ଗୀତ ଗାଇ ।
ନବ ମଳୟର   ମରୁତ ପରଶେ-
ହୃଦ ହୁଏ ପୁଲକିତ ।   ||୧||



ମଧୁ ହୋଇ ବହେ  ଗଙ୍ଗା ଗୋଦାବରୀ,
ଅମୃତର ଝର   ଯାଏ ଝରି ଝରି ।
ସ୍ୱର୍ଗ ସିଂହାସନ   ଉଚ୍ଚ ହିମାଳୟ-
ହରି ନିଏ କୋଟି ଚିତ୍ତ ।   ||୨||





ଡକ୍ଟର କୃତ୍ତିବାସ ନାୟକ

## ଜନନୀ
## ଜନ୍ମଭୂମି

ସୁନ୍ଦର ମୋ   ଜନମ ଭୂଇଁ-
ସୁନ୍ଦର ତା'   ସବୁଜ ବନ,
ସୁନ୍ଦର ତା'   ପାହାଡ଼ ନଈ ।   (ଘୋଷା)



ଏହି ମାଟିର   ମଧୁର ଫଳ,
ଦେହରେ ମୋର   ଦେଇଛି ବଳ ।
ଏଇଠି ଯିଏ କରନ୍ତି ବାସ-
ସକଳେ ମୋର ଭଉଣୀ ଭାଇ ।   ।।୧।।



ଏହି ଦେଶର ପୁରୁଷ ନାରୀ,
ସଭିଏଁ ମୋର ନିଜର ପରି ।
ତାଙ୍କରି କୋଳେ ବଢ଼ିଛି ମୁହିଁ-
କେତେ ଶରଧା ଭରସା ପାଇ ।   ।।୨।।



ଏହି ଦେଶର   ପାଣି ପବନ,
ଗଢ଼ିଛି ସିନା   ମୋର ଜୀବନ ।
ପାଇଛି ଯାହା ଦେଇଛି ମା'-
ତା'ସଙ୍ଗେ କା'ର ତୁଳନା ନାହିଁ ।   ।।୩।।





ଡକ୍ଟର କୃତ୍ତିବାସ ନାୟକ

# ଗଉରବ ମୟୀ
# ମମତା ମୟୀ
# ତୁ

ଗଉରବମୟୀ   ମମତାମୟୀ ତୁ -
ଜନନୀ ଜନ୍ମ ଭୂମି,
ଯୁଗ ଯୁଗ ଧରି   ସାଗର ତୋହର-
ଚରଣକୁ ଯାଏ ଚୁମି । (ଘୋଷା)



ତୋ' କୋଳେ ଜନମି   କେତେ ସୁର ବୀର,
ଢାଳିଲେ ରକତ  ଟେକି ତୋର ଶିର ।
ମୁକ୍ତିର ମସାଲ   ଭକତିର ଫୁଲ-
ସେ ତ ହୀରା ନୀଳା ମଣି । ।।୧।।



ମଳୟ ମରୁତ ତୋର ଗୀତି ଗାଏ,
କୋଇଲିର ସୁର  ମନ ମୋହିନିଏ ।
ତୋର ପୂଜା ପାଇଁ   ପାଦପ ରାଜିଏ-
ଫଳପୁଷ୍ପ ଦିଏ ବୁଣି ।   ।।୨।।



ଯୁଗ ଯୁଗ ପାଇଁ   ତା' ସେବା କାରଣେ,
ମଥା ନଇଁ ଥାଉ ଜନନୀ ଚରଣେ ।
ଜନନୀ ସେବାରେ ତନୁ ମନ ଦେବି-
ନିଜକୁ ସେବକ ମଣି ।   ।।୩।।





ଡକ୍ଟର କୃତ୍ତିବାସ ନାୟକ

# ମୋ ଦେଶ ଭାରତ

ମୋ ଦେଶ ଭାରତ ଏକ କଳ୍ପବଟ-
ବିତରେ ଅମୃତ ଫଳ,
ସେ କଳ୍ପବଟରେ ଶହେ କୋଟି ଲୋକ-
ଫୁଟିଛନ୍ତି ହୋଇ ଫୁଲ । ।ଘୋଷା।

ବିଚିତ୍ର ସେ ବୃକ୍ଷ ପଚିଶଟି ଶାଖା-
ଛଅ ଗୋଟି କୁଆଁ ତାର,
ତାପରେ ମାଡ଼ିଛି ଗଂଗା-ଗୋଦାବରୀ-
କେତେ ନଦ ନଦୀ ଧାର ।
କେତେ ପୁଣ୍ୟ ଧାମ ଅଙ୍ଗେ ଅଙ୍ଗେ ତା'ର -
ରାଜଧାନୀ ବୃକ୍ଷ ମୂଳ । ।୧।

ସେ କଳ୍ପବଟର ଗହଳ ଛାଇରେ -
ବଢ଼ିଛି ଅନେକ ଭାଷା,
କୋଟି କୋଟି ପ୍ରାଣେ ପୁଲକ ଜଗାଏ-
ନାନା ଜାତି ବେଶ ଭୂଷା।
ଏକରେ ଅନେକ ଅନେକରେ ଏକ -
ଏକତା ବୃକ୍ଷର ବଳ। ।୨।



ଡକ୍ଟର କୃତ୍ତିବାସ ନାୟକ





## କୁହନି ଆମକୁ

ଡକ୍ଟର କୃତ୍ତିବାସ ନାୟକ

କୁହନି ଆମକୁ ଅବୋଧ ବାଳକ –
ଅଜ୍ଞାନ–ଅକ୍ଷମ ଶିଶୁ,
ଆଗାମି କାଲିର ମହା ଦ୍ରୁମ ଆମେ –
ଆଜି ଛୋଟ ଚାରା ଦିଶୁ ।
। ଘୋଷା ।

ଜ୍ଞାନର ଭଣ୍ଡାର ଦୁଆର ଖୋଲିଛି –
ଆଲୋକ କରି ପ୍ରକାଶ,
ବିଜ୍ଞାନ ଆମକୁ ଦେଖାଇଛି ପଥ –
ହଟାଇ ଅନ୍ଧ ବିଶ୍ୱାସ ।
ଜ୍ଞାନ ବିଜ୍ଞାନର ନୂତନ ଆଲୋକ –
ସବୁରି ମନକୁ ଆସୁ । ।୧।

ମାତୃଭୂମି ପାଇଁ ହୋଇବୁ ସଇନ –
ଆକାଶରେ ଯିବୁ ଉଡ଼ି,
ଅନ୍ନ ଦେବା ପାଇଁ ହୋଇବୁ କୃଷକ –
ମଥାରେ ପଗଡ଼ି ଭିଡ଼ି ।
ଆମରି ସାହସେ ମନର ବିଶ୍ୱାସେ –
ଏ' ଦେଶ –ଏ' ମାଟି ହସୁ । ।୨।







# ଡାକବାଲା ମୁଁ

ଡକ୍ଟର କୃତ୍ତିବାସ ନାୟକ

ଡାକବାଲା ମୁଁ ଡାକବାଲା,
ପୋଷାକ ମୋର ଢିଲା ଢାଲା ।
ବଡ଼ରୁ ସାନ ଖୋଜନ୍ତି ମୋତେ –
ଚିହ୍ନନ୍ତି ସବୁ ଛୁଆ ପିଲା । ।ଘୋଷା।

ଚିଠିରେ ଭରା ମୋର ମୁଣି,
ମନିଅର୍ଡ଼ର ଦିଏ ଗଣି ।
ସୁଖ ଦୁଃଖର ସବୁ ଖବର –
ମୋ ଆଗେ ହୋଇଯାଏ ଖୋଲା । ।୧।

କିଏ ସେ ମୋତେ ଡାକେ ଭାଇ,
କିଏ ବା ମିଠା ଦିଏ ଖୋଇ ।
କାହାର ଦୁଃଖ ଖବର ଥିଲେ –
ମୋ ଆଗେ ପଡ଼େ ହାଲାଗୁଲା । ।୨।

ସାଇକେଲଟି ମୋର ସାଥୀ,
ନାହିଁ ବରଷା ଶୀତ–ତାତି ।
ଚିଠି ବାଣ୍ଟିଲେ ଆନନ୍ଦ ପାଏ –
କାମରେ କରେ ନାହିଁ ହେଳା । ।୩।







## ଶୁଭ ସକାଳର

ଶୁଭ ସକାଳର   ଅରୁଣ ଆମେ ରେ –
କୋଟି ସୂର୍ଯ୍ୟ ବଳ ଭରା,
ଆମରି ପରଶେ   ଦୁନିଆଟି ହସେ–
ଫିଟାଇ ଅମୃତ ଧାରା । ।ଘୋଷା।

ଛୁଇଁନି ଆମକୁ   ପାପ ପଙ୍କ ମାୟା,
ଆମ ମୁଖେ ନାହିଁ   କାଳିମାର ଛାୟା ।
ଆମ ଶିଶୁମନ   କୁସୁମ ସମାନ –
ହସ ପୁଣି ମଧୁଝରା । ॥୧॥

ଆମେ ରୂପା ଜହ୍ନ   ପୂନେଇଁ ରାତିର,
ଗଭୀର ଜଳରେ   ରତନ ଭଣ୍ଡାର ।
ଆକାଶ ରାଇଜେ   ଆମେ ଶିଶୁ ଯେତେ –
ଉଜ୍ଜ୍ୱଳ ପାହାନ୍ତି ତାରା । ॥୨॥

ଆମ ମନେ ନାହିଁ   ପର ଆପଣାର,
ଆମ ପାଇଁ ବିଶ୍ୱ   ଏକ ପରିବାର।
ଶାନ୍ତିର ଦୂତ   ସତ୍ୟର ପୂଜାରୀ –
ସାଜି ସଜାଇବୁ ଧରା । ॥୩॥





# ଆମେ ଶିଶୁ ଆଜି ଅରୁଣ

ଡକ୍ଟର କୃତ୍ତିବାସ ନାୟକ

ଆମେ ଶିଶୁ ଆଜି ଅରୁଣ,
ଆଗାମି କାଲିର ତରୁଣ । ।ଘୋଷା।

ପୂରୁବ ଆକାଶେ ସିନ୍ଦୂରା ଫାଟିଛି,
ରକତ କିରଣ ସୁଅ ବି ଛୁଟିଛି ।
ଆମରି ଆଭାରେ ଆମରି ଶୋଭାରେ –
ଅନ୍ଧାର ହୋଇଛି ହରଣ। ॥୧॥

ସତ୍ୟ ରକ୍ଷା ଆମ ଜୀବନର ପଣ,
ମାନବ ଜାତିର କରୁ ଜୟ ଗାନ।
ନାହିଁ ତ ଆମର ପର ଆପଣାର
ଆମେ ଅମୃତର ସନ୍ତାନ । ॥୨॥

ଆମରି ହସରେ ହସିବ ଦୁନିଆ,
ଦୁଃଖ ଆଉ ଶୋକ ହୋଇବେ ଛାନିଆଁ ।
ଅସତ୍ୟ ଅନ୍ଧାର ବୁକୁ ଚିରି ଆମେ –
ଶାନ୍ତିକୁ କରିବୁ ବରଣ । ॥୩॥



# ଶିଶୁ ଗୀତିକା



ଡକ୍ଟର କୃତ୍ତିବାସ ନାୟକ

## କୋଟି କୋଟି ତାରା

କୋଟି କୋଟି ତାରା ଆକାଶେ ଉଇଁଛି–
ନାଆଁ ତା'ର କିଏ ଜାଣେ,
କିଏ ବଡ଼ ଆଉ କିଏ ସାନ ପୁଣି–
କାହା ଗୁଣ କିଏ ଚିହ୍ନେ ? ।ଘୋଷା।

ମିଟି ମିଟି କରେ କିଏ ଆଖି ତା'ର–
ଦିଶେ କିଏ ପୁଣି ତୋରା,
ନାଆଁ ତ ଅନେକ ପରିଚୟ ଏକ–
ସଭିଏଁ ଆକାଶ ତାରା ।
ଆକାଶ ରାଇଜ ଫୁଲ ପସରାରେ –
ହୀରା ଫୁଲ ଫଣେ ଫଣେ । ॥୧॥

ଆମେ ଯେତେ ଶିଶୁ ଭିନ୍ନ ଭିନ୍ନ ଦିଶୁ –
କିଏ କଳା କିଏ ଗୋରା,
ସଭିଙ୍କର ମନ କୁସୁମ ସମାନ–
ହସ ଆମ ମଧୁଝରା ।
ଦୁନିଆ ଗଛରେ ଫୁଟି ଅଛୁ ଆମେ –
ନୂଆଫୁଲ ଜଣେ ଜଣେ ॥୨॥

ଧରମ କରମ ପଥରେ ପଥିକ –
ସତ୍ୟର ପ୍ରହରୀ ଆମେ,
ଶାନ୍ତିର ବାରତା ପହଞ୍ଚାଇ ଦେଉ–
ମାନବ ଜାତିର କାନେ।
ସେ ବାରତା ଯାଇ ପ୍ରତିଧ୍ୱନି ହୁଏ
ଜଗତର କୋଣେ କୋଣେ । ॥୩॥





# ଚାଚା ନେହେରୁ

ଡକ୍ଟର କୃତ୍ତିବାସ ନାୟକ

ଚାଚା ନେହେରୁ ହେ ପ୍ରିୟ,
ଚାଚା ନେହେରୁ । ।ଘୋଷା।

ଫୁଲ କେତେ ଫୁଟାଇଲ,     ନିଜେ ହସି ହସାଇଲ ।
କାନରେ ଦେଲ ମନ୍ତ୍ର,     କିଣିଲ ଶିଶୁ ଅନ୍ତର ।
ଆସିଲ କି' ଅବତରୀ ସରଗପୁରୁ ! ॥୧॥

ନାହିଁ ପର ଆପଣାର,     ଦେଶ ଗଠନଟି ସାର ।
ଗଢ଼ି ପଞ୍ଚଶୀଳ ନୀତି,     ବଢ଼ାଇଲ ଦେଶ ପ୍ରୀତି ।
ମନଟି କୋମଳ ତୁମେ ଟାଣ ବାହାରୁ । ॥୨॥

ଧରିଥିଲେ ଟାଣ କରି,     ଅହିଂସାର ତରବାରୀ ।
ତ୍ୟାଗେ ନାହିଁ ପଟାନ୍ତର,     କର୍ମେ ସାଜି କର୍ମବୀର ।
ଦେଖି ନାହୁଁ ଦିନେ ରାଗ ତୁମ ମୁହଁରୁ । ॥୩॥

ତୁମେ ତ ଗୋଲାପ ପ୍ରିୟ,     କୁସୁମ ପରାଏ ଦେହ ।
ଗୋଲାପଟିଏ ହୋଇବୁ,     ତୁମ ହୃଦୟେ ରହିବୁ ।
କେବେ ତ ଖସିବୁ ନାହିଁ ତୁମ ଦେହରୁ । ॥୪॥





# ଶିଶୁ ଗୀତିକା

## ଗୁଡ଼ ତ ମିଠା



ଡକ୍ଟର କୃତ୍ତିବାସ ନାୟକ

ଗୁଡ଼ ତ ମିଠା ଚିନି ବି ମିଠା–
ଆହୁରି ମିଠା ମହୁ,
କାଳୀଗାଈର ଗୋରସ ମିଠା–
ମିଠା କୋଇଲି କୁହୁ ।

ଅଜା ପାଟିର ପାକୁଆ କଥା–
ଆଈର ଗାଳି ମିଠା,
ମାଆ ହାତରେ ରନ୍ଧା ଦରବ–
ସରୁ ଚକୁଳି ପିଠା ।
କୁନି ପିଲାର ଦରୋଟି ହସ–
ଶୀତ ଦିନର ଖରା,
କାର୍ତ୍ତିକ ମାସ ପୂନେଇଁ ଚାନ୍ଦ–
ଆହା କି' ମଧୁଝରା ।
ଚଇତି ମାସ ଚୋରା ପବନ–
ଦେହକୁ ଲାଗେ ମିଠା,
ମନକୁ ଛୁଏଁ ଶାଗୁଆ ବନ–
ଗହଳ ଆମ୍ବ ତୋଟା ।
କାନକୁ ମିଠା ମଧୁର ସୁର–
କବିତା ଛନ୍ଦ ଥିଲେ,
ପରୀକ୍ଷା ବେଳେ ଲାଗଇ ମିଠା–
ଉତ୍ତର ଆସୁଥିଲେ ।
ରାଇଜ ଦେଶ ଲାଗଇ ମିଠା–
ନିଜେ ମଣିଷ ହେଲେ,
ସଭିଙ୍କ ମନ ଛୁଇଁବା ସିନା–
କଥାରେ ମିଠା ଥିଲେ ।





# କେମିତି ହେବ କୁହ

ଡକ୍ଟର କୃତ୍ତିବାସ ନାୟକ

କେମିତି ହେବ କୁହରେ ପିଲେ – କେମିତି ହେବ କୁହ,
ଆକାଶେ ଯେତେ ଅଛନ୍ତି ତାରା ହୋଇଲେ ଝିଅ-ପୁଅ ।
।ଘୋଷା।

ମେଘ ଉପରେ ବିଜୁଳି ବସି ଯଦି ପହଞ୍ଚି ଯାଏ,
ଆଲୋକ ବୁଣି ଅନ୍ଧାର ରାତି ଉଜ୍ଜ୍ୱଳ କରିଦିଏ।
କହିବ ପୁଣି ଯିବିନି ଆଉ –
ମୋହରି ସାଂଗ ହୁଅ । ।୧।
ଆକାଶ ହେବ ଖେଳ ପଡ଼ିଆ ଜହ୍ନରାଇଜ ଘର,
ପିଲାଙ୍କୁ ପାଇ ଆମରି ଦେଶ ହେବ ସରଗ ପୁର।
କହିବେ ପୁଣି ଖେଳିବୁ ଖେଳ –
ତୁମ ଖେଳଣା ଦିଅ । ।୨।

ସରଗ ଛାଡ଼ି ଜହ୍ନମାମୁ ତ ଓହ୍ଲେଇ ଆସିଥିବେ,
ତାଙ୍କ ରାଇଜ ଗୁପତ କଥା କାନରେ କହିଦେବେ।
ହାତରେ ଧରି ହସ ପସରା –
କହିବେ ନିଅ ନିଅ। ।୩।
ଭାରି ବଢ଼ିଆ ମଜା ଲାଗିବ ଖେଳିବୁ ଆମେ ଖେଳ,
ଖେଳଣା ପଛେ ଯାଉ ଆମର କରିବୁ ନାହିଁ ଗୋଳ।
ନୂଆ ସାଥୀଙ୍କୁ ଜହ୍ନମାମୁଙ୍କୁ –
କହିବୁ ରୁହ ରୁହ। ।୪।







## ଯେଉଁଠି ଥାଅ

ଯେଉଁଠି ଥାଅ ଯାହାବି ଖାଅ-   ଯେତେ ଓଡ଼ିଆ ପୁଅ,
ଓଡ଼ିଆ ଲେଖ ଓଡ଼ିଆ ପଢ଼-   ଓଡ଼ିଆ ଭାଷା କୁହ ।
(ଘୋଷା)

ଆମ ସଂସ୍କୃତି   ଆମରି ଭାଷା –
ଆମରି ପରିଚୟ,
ନିଜ ମାଆର   ଗୌରବ ପାଇଁ –
ମନରେ ରଖ ଲୟ ।   ॥୧॥

ମାତୃଭାଷା ଯେ   କହି ପାରେନା –
ମାଆକୁ ମଣେ ହେୟ,
ତା'ଠାରୁ କେବେ   ଆଶା କରନା –
ଯଶ ଗୌରବ ନ୍ୟାୟ ।   ॥୨॥

ଓଡ଼ିଆ ଜାତି   ବୀର ସଂସ୍କୃତି –
ଜାଣେନା ପରାଜୟ,
ସେହି ଜାତିର   ଦାୟାଦ ଆମେ –
ଲାଗିବ କିଆଁ ଭୟ ?   ॥୩॥

ପାରୁଛ ଯଦି   ଇଂରାଜୀ ପଢ଼ –
ହିନ୍ଦୀରେ ଗୀତ ଗାଅ,
ନିଜ ଭାଷାର   ମାନ ମହତ –
ଉଚ୍ଚରେ ରଖି ଥାଅ ।   ॥୪॥

ଜଗାଇ ଜାତି   ଫୁଲାଇ ଛାତି –
ନିଜର ଭାଷା କୁହ,
ନିଜ ସଂସ୍କୃତି   ଆଦରି ନେଇ –
ଖାଣ୍ଟି ଓଡ଼ିଆ ହୁଅ ।   ॥୫॥







# ନୂଆ ବରଷ

ଡକ୍ଟର କୃତ୍ତିବାସ ନାୟକ

ନୂଆ ବରଷ ହେ –   ନୂଆ ବରଷ,
ଆଣିଛ ଦେବ କି   ନୂଆ ପରଶ !
(ଘୋଷା)

ପାଇଛି ଯାତନା   ଯେ ଦୁଃଖୀ ଜନ,
ଲିଭି ଯାଇଛି ଯା'   ସୁଖ ସପନ ।
ସପନ ଦେଖାଇ   ସୁଖକୁ ଚଖାଇ–
ଭରି ଦିଅ ଦୁଃଖୀ ମନେ ହରଷ ।   ॥୧॥

ଆଗାମି ଦିନରସବୁ ସକାଳ,
ତାଙ୍କ ପାଇଁ ହେଉ   ଥିବ ଉଜ୍ଜ୍ୱଳ ।
ଅଣ୍ଟା ଭିଡ଼ିବାରେ   ଦେଶ ଗଢ଼ିବାରେ–
ଭରିଦିଅ ମନେ ବଳ, ସାହସ !   ॥୨॥

ଅଭାବ କଷଣ   ହୋଇବ ନାଶ,
ଫୁଲ ଫଳେ ଭରି   ଯିବ ଏ' ଦେଶ ।
ସୁଖ ଶାନ୍ତି ଯଶ   ହୋଇବ ପ୍ରକାଶ–
ଦୂରେ ରହିଥିବ ଝଡ଼ ବତାଶ ।   ॥୩॥







# ଆହା କି' ସୁନ୍ଦର

ଆହା କି' ସୁନ୍ଦର ଏହି ଗାଆଁ ମୋର–
ମାଟି ସିନା ସୁନା ତା'ର,
ଏହି ଯେତେ ଘର ଏକ ପରିବାର–
ନାହିଁ ପର ଆପଣାର। (ଘୋଷା)

କିଏ ଭାଇ ପୁଣି କିଏ ପିଉସା,
କିଏ ସେ ମାଉସୀ କିଏ ମଉସା।
ଆମେ ତ ତାଙ୍କର ସିଏ ତ ଆମର–
ଗୋଟିଏ ପକ୍ଷୀର ପର। ॥୧॥

ହଳ ଯୋଚି ଯାଏ ଜଗୁଆ ଭାଇ,
କାଳିଆ କସରା ବଳଦ ଦୁଇ।
କଣ୍ଠରେ ତାହାର ସଂଗୀତ ଲହରୀ–
ଶୁଭିଯାଏ ବହୁ ଦୂର। ॥୨॥

ଏଇ ଗାଆଁ ତୋଟା କେଦାର ମାଳ,
କ୍ଷେତରେ ଲୋଟୁଛି ସୁନା ଫସଲ।
ଲକ୍ଷ୍ମୀ ଠାକୁରାଣୀ ଆସନ୍ତି ଓହ୍ଲାଇ–
ତେଜି ବଇକୁଣ୍ଠ ପୁର। ॥୩॥

ଗାଆଁ ପାଖ ଏହି ଛୋଟିଆ ନଈ,
ଗାଆଁରୁ ଗାଆଁକୁ ଯାଉଛି ଛୁଇଁ।
ଆମରି ଗାଆଁଟି ସରଗ ସାଜିଛି–
ସଂସାର ଯାକରେ ସାର। ॥୪॥





# ଧରଣୀ ମାଆ ମୋ

ଡକ୍ଟର କୃତ୍ତିବାସ ନାୟକ

ଧରଣୀ ମାଆ ମୋ ଓଢ଼ଣା ଟାଣିଛି–
ସବୁଜ ପଣତ କାନି,
ହସେ ଫୁଲବନ ନାଚେ ତନୁମନ–
ବେଶ ହେଲେ ମାଆରାଣୀ ।
(ଘୋଷା)

ସବୁଜ ଆକାଶ ସବୁଜ ସାଗର–
ସବୁଜିମା ମଧୁଝରା,
ବରଷାର ଧାର ଝରେ ଝର ଝର –
ସବୁଜ ରଂଗରେ ଭରା– ।
ଫୁଲର ମହକେ ଭରି ଦେଇଛି କେ–
ସବୁଜ କଣିକା ବୁଣି । ।୧।

ମୟୂର ନାଚରେ ଲାଗିଛି ସବୁଜ–
କୋଇଲିର କୁହୁତାନେ,
ଦେଇଛି କେ' ହସ ସବୁଜ ପରଶ–
ମଧୁଝରା ସମୀରଣେ ।
ସବୁଜ ବନାନୀ ସବୁଜ ଧରଣୀ –
ମନକୁ ନେଇଛି କିଣି । ।୨।





# ଆସରେ ଭଉଣୀ ଭାଇ

ଡକ୍ଟର କୃତ୍ତିବାସ ନାୟକ

ଆସରେ ଭଉଣୀ ଭାଇ – କୁନା ମୁନା ଟୁକୁନା,
ଜାଣିବା–ଶୁଣିବା ଆମେ–ଯାହା ସବୁ ଅଜଣା ।
(ଘୋଷା)

ଆକାଶେ ସୂରୁଜ ଥାଇ          ଚାହିଁଥାଏ ତଳକୁ,
ମଇଳାକୁ ଛାଡିଦେଇ          ନେଇଯାଏ ଜଳକୁ ।
ଟାଣ ଖରା ଧରେ ନାହିଁ–
ଆମ ଘର ଅଇନା ।   ।୧।

ଭଲକଥା ଶୁଣିବାକୁ          କାନଥିବା ଡେରିକି,
ଭଲ ଚିଜ ଦେଖିବାକୁ          ଚାହିଁଥିବା ଫେରିକି,
ସତକଥା କହିବାକୁ–
ହେବା ନାହିଁ ବିମନା ।   ।୨।

ଖରାପ କଥାକୁ କେବେ          ନେବା ନାହିଁ କାନକୁ,
କାଚପରି ନିରିମଳ          ରଖିଥିବା ମନକୁ ।
ମିଛ କେବେ କହିବାନି–
ଯାହା ଲାଗେ ଅଲଣା ।   ।୩।







# ଫୁଲ ହୋଇ ଫୁଟିବି

ଡକ୍ଟର କୃତ୍ତିବାସ ନାୟକ

ଫୁଲ ହୋଇ ଫୁଟିବି ମୁଁ     ବିଶ୍ୱ ବଗିଚାରେ,
ଭରି ଦେବି ଦୁନିଆକୁ     ଫୁଲ ମହକରେ ।
(ଘୋଷା)

ମନ ମୋର ହୋଇଥିବ –
ଦେବତାର ଘର,
ମିଛ ମାୟା ଦୁଃଖ କିଛି –
ନଥିବ ମୋହର ।
ସତକହି ତୋଷିବି ମୁଁ –
କୋଟି କୋଟି ପ୍ରାଣ,
ହସି ହସାଇବା ହେବ –
ମୋ ଜୀବନ ପଣ ।
ପର ଆପଣାର ଭାବ ନଥିବ ମନରେ ।୧ ।

ଫୁଲ ତ ମଉଳି ଯାଏ –
ଫୁଟି ଦିନଟିଏ,
ଝରି ପଡ଼ିବ ସେ ଜାଣି–
ମଧୁ ବାଣ୍ଟି ଦିଏ ।
ଫୁଲ ପରି ବାଣ୍ଟିବି ମୁଁ–
ହସ ଆଉ ଖୁସି,
ମୋ ସେବାରେ ହେବେ ବଶ –
ସାରା ବିଶ୍ୱବାସୀ ।
ସଫଳ ହେବ ଜୀବନ –
ଏହି ଜନମରେ ।୨ ।





# ସତ କହି ପଛେ

ଡକ୍ଟର କୃତ୍ତିବାସ ନାୟକ

ସତ କହି ପଛେ ମିଳୁ ପ୍ରାଣ ଦଣ୍ଡ –
କରିବୁ ସତ୍ୟର ଜୟଗାନ,
ମଧୁର କଥାରେ ସ୍ନେହ ଭକତିରେ –
କିଣି ନେବୁ କୋଟି ମନପ୍ରାଣ। ।୧।
(ଘୋଷା)

ସବୁରି ସୁଖରେ ବିତରି ଦେବୁରେ –
ଆମ ସୁଖ ବୋଲି ଅଛି ଯାହା,
ପର ଦୁଃଖ ଦେଖି ହେବୁ ସିନା ଦୁଃଖୀ–
ବିପଦେ ବଂଧୁକୁ ହେବୁ ସାହା।
ପର ଦରବକୁ ଚାହିଁବୁନି ଆମେ–
ଜାଣିବୁ ସେ ପରା ବିଷଧନ ।୧।

ଲୋଡ଼ା ନାହିଁ ଆମ ହୀରା ନୀଳା ମୋତି–
ଲୋଡ଼ା ନାହିଁ ଦେହ ବାହୁବଳ,
ସତ୍ୟ ଧର୍ମ ନ୍ୟାୟ ବଳେ ବଳିୟାନ–
ହୋଇ ବାଣ୍ଟିବୁ ତା' ଫଳ ମିଠା ।
ସବୁରି ସୁଖରେ ସୁଖୀ ହେଲେ ଆମେ –
କି ହେବ ଆମର ଧନ ଜନ ! ।୨।







## କଳିକାଟି ମୁହିଁ

ଡକ୍ଟର କୃତ୍ତିବାସ ନାୟକ

କଳିକାଟି ମୁହିଁ    କାଲି ହେବି ଫୁଲ–
ଚାରିଦିଗ ସିନା ମହକିବ,
ମୋ ହାତ ପରଶେ  ଏ' ଦେଶର ମାଟି –
ନୂଆ ରୂପ ନେଇ ଚହଟିବ । (ଘୋଷା)

ତାରା ପରି ମୁହିଁ    ଛୋଟ ହେବି ପଛେ –
ନିଜର ଆଲୋକ ଦେଉଥିବି,
ଦେଶ ବିକାଶରେ    ବାକି ଅଛି ଯାହା –
ନିଜ ହାତେ ତାକୁ ସଜାଡ଼ିବି ।
ହସାଇ ଜଗତ    ହସିବ ଭାରତ–
ମାଟିମାଆ ମୋର ହସୁଥିବ ।୧ ।

ଲୋଡ଼ା ନାହିଁ ମୋର    ଶତ ସିଂହ ବଳ –
ଧର୍ମେ ହେବି ମୁହିଁ ବଳିୟାନ,
ମଧୁର କଥାରେ    ସ୍ନେହ ଭକତିରେ –
କିଣି ନେବି କୋଟି ଜନ ମନ ।
ମାଟି ମାଆ ଟେକ    ରଖିବି ମୁହିଁ ତ–
ବଢ଼ାଇ ତାହାର ଗଉରବ ।୨ ।







# ମାଆ ଠାରୁ ବଳି

ଡକ୍ଟର କୃତ୍ତିବାସ ନାୟକ

ମାଆ ଠାରୁ ବଳି ନାହିଁ   କେ' ସଂସାରେ –
ତା' ସରି କେ' ହେବ ଆଉ !
ମାଆ ନାହିଁ ଯା'ର   ସାହା ନାହିଁ ତା'ର–
ହୀରା ମୋତି ଯାହା ଥାଉ ।
(ଘୋଷା)

ମାଆର ମମତା   ମିଠା ମିଠା କଥା --
ସ୍ନେହ ତା'ର ମଧୁଝରା,
ତା' ହାତ ପରଶ   ଆହା କି ସରସ–
ଗାଳି ତା' ଆଶିଷ ପରା ।
ଆମ ଏ' ଜୀବନ   ଗଢ଼ା ଯା'ର ହାତେ–
ତା' ଚରଣେ ମଥା ଥାଉ ।   । ୧ ।

ମାଆଟି ଆମର   ଦେବୀ ସ୍ୱରୂପିଣୀ–
କରୁଣାର ଅବତରୀ,
ସେ ମାଆର ନାମ   ଆମ ଗଣ୍ଠିଧନ–
ତରିଯିବା ନାମ ଧରି ।
ସାଗର ପରି ତା'   ହୃଦୟ ଗଭୀର –
ସରଗଠୁଁ ବଡ଼ ସେହୁ ।   ।୨ ।







# ସରଗ ରାଇଜେ

ସରଗ ରାଇଜେ ଜହ୍ନ ମେଳେ ନିତି–
ଫୁଟେ କେତେ ତାରା ଫୁଲ,
କରିନି ତୁଳନା କରୁନି କଳନା–
ଜହ୍ନ ପାଶେ ତାରା ମୂଲ । (ଘୋଷା)

ସରଗ ଭୁବନେ ନନ୍ଦନ କାନନେ–
ଫୁଟେ କେତେ ପାରିଜାତ,
ତା' ରଂଗ ବାସନା ନାହିଁ ତ ତୁଳନା–
ଚିତ୍ତ କରେ ପୁଲକିତ ।
ତଥାପି ଫୁଟଇ ମାଳତି ମାଧବୀ–
ଯେ ନୁହେଁ ତାହାର ତୁଲ । ॥୧॥

ମହା ସାଗରରେ ଭରିଛି ଯେ ନୀର–
କିଏ କରିବ କଳନା,
ଶଙ୍ଖେ ଜଳ ଦାନ ସାଗର ପ୍ରମାଣ –
ମହା ପୁଣ୍ୟେ ହୁଏ ଗଣା ।
ସୂରୁଜ ଆଗରେ ମାଟିର ଦୀପାଳି –
ଜଳି ଉଠେ ନେଇ ତେଲ । ॥୨॥

ବିଶାଳ ଜଗତେ ଗୁଣି ଜ୍ଞାନୀ କେତେ–
ଦେଖାଇ ଗଲେ ଆଲୋକ,
ଅସତ୍ୟ ଅନ୍ଧାର ହଟାଇବା ପଥେ
ହେବା ଜୁଳୁଜୁଳା ପୋକ ।
ଯିଏ ଯାହା ହେଉ ଯିଏ ଯାହା ଥାଉ–
ସଭିଙ୍କର ଅଛି ମୂଲ । ॥୩॥





# କାଗଜ ଗୁଡ଼ିରେ

ଡକ୍ଟର କୃତ୍ତିବାସ ନାୟକ

କାଗଜ ଗୁଡ଼ିରେ    କାଗଜ ଗୁଡ଼ି,
ଆକାଶ ରାଇଜେ    ଯାଆ ତୁ ଉଡ଼ି । (ଘୋଷା)

ଆକାଶେ ରହିଛି    ଜହ୍ନ ରାଇଜ,
ସେଇଠି ଲାଗିବ    ବଡ଼ ମଉଜ ।
ବଉଦରେ ବସି    ତାରା ସଂଗେ ମିଶି–
ମୋ ପାଖକୁ ପୁଣି ଆସିବୁ ଫେରି । ।୧।

କହିଦେବୁ    ଜହ୍ନମାମୁର କାନେ,
ଅଳପ ଦିନରେ    ଆସିବୁ ଆମେ ।
ଆମ ରାଇଜରୁ    ମାମୁ ରାଇଜକୁ –
ରକେଟ ଚାଲିବ ଧାଡ଼ିକି ଧାଡ଼ି । ।୨।

ତାରାଙ୍କୁ ବସେଇ    କରିବୁ ସଭା,
ବିଜ୍ଞାନର ବଳ    ବୁଝେଇ ଦେବୁ ।
ସବୁ ଗ୍ରହ ତାରା    ହେବ ଆମ ଘର–
ଜହ୍ନମାମୁ ପରେ ତାଙ୍କର ପାଳି । ।୩।





ଡକ୍ଟର କୃତ୍ତିବାସ ନାୟକ

## ନୀଳ ଆକାଶେ

ନୀଳ ଆକାଶେ ବଉଦ ଥିଲେ –
ଫାଙ୍କରେ ଜହ୍ନ ହସେ,
ଫୁଲ ଫୁଟିଲେ ଆମ ବଗିଚା –
ବଡ଼ ସୁନ୍ଦର ଦିଶେ ।

(ଘୋଷା)

ଖରା ଦିନର ପଦ୍ମ ପୋଖରୀ—
ଶରତ ରତୁ କଇଁ,
ଶୀତ ଦିନର ଆମ୍ବ ବଉଳ—
ମନକୁ ଦିଏ ଛୁଇଁ।
ବସନ୍ତ ରତୁ ଚୋରା ଚଇତି –
କାହାକୁ 'ପୁଣି ରସେ । ।୧।

କ୍ଷେତରେ ଥିଲେ ପାଚିଲା ଧାନ—
ବାଛୁରି ପାଶେ ଗାଈ,
ସୁନ୍ଦର ଲାଗେ ଆମ ଅଜାଙ୍କୁ –
ପାଖରେ ଥିଲେ ଆଈ।
ସୁନ୍ଦର ଦିଶେ ଶିଶୁଟି ଯେବେ –
ମାଆ କୋଳରେ ବସେ। ।୨।





## ନିଜ ଅଭିନୟ

ନିଜ ଅଭିନୟ ନିଖୁଣ ହୋଇଲେ –
ରଂଗମଞ୍ଚ ମହୀତଳେ,
କୋଟିଏ ଭିତରୁ ଗୋଟିଏ ମଣିଷ –
ବଞ୍ଚି ରହିଯାଏ ବଳେ । (ଘୋଷା)

କେତେ ଗାନ୍ଧୀ ନାମ ଧରି ବୁଲୁଛନ୍ତି –
ଜଗତ ଜଣକୁ ଚିହ୍ନେ,
କେତେ ପୁଣି ମଧୁସୂଦନ ଅଛନ୍ତି –
ମଧୁବାବୁ ମାତ୍ର ଜଣେ । ।୧।

ଗରିବର ବଂଧୁ ଦୁଃଖୀ ପ୍ରାଣସିନ୍ଧୁ –
ଗୋପବଂଧୁ ନାମ ଖ୍ୟାତ,
ଭଞ୍ଜ ବୋଲି ପୁଣି ଜଣକୁ ବୁଝାଏ –
ଲେଖିଛନ୍ତି ଯିଏ ଗୀତ । ।୨।

ସେନାପତି ବୋଲି କୁହନ୍ତି ଯାହାକୁ
ଫକୀର ତାଙ୍କରି ନାମ,
ମହତାବ ନାମ ସର୍ବେଁ ବୁଝିବେ –
ସେହି ଜଣେ ହରେକୃଷ୍ଣ । ।୩।

ବିଜୁ ନାମ ପାଶେ କିଛି ବି ନଥିଲେ–
ତାଙ୍କୁ ନ ଚିହ୍ନିବ କିଏ ?
ଗୋଟିଏ ନାମରେ କୋଟିଏ ଥିଲେ ବି –
ନାମ ଜଣଙ୍କର ହୁଏ । ।୪।





# ଚକ ଯାଏ ଗଡ଼ି

ଡକ୍ଟର କୃତ୍ତିବାସ ନାୟକ

ଚକ ଯାଏ ଗଡ଼ି        ଅଖ ଦିଏ ରଡ଼ି –
ରଥ ଯାଏ ଗଡ଼ି ଗଡ଼ି,
ସହର ବଜାରେ        ରାଜପଥ ପରେ –
ଗାଡ଼ି ଚାଲେ ଧାଡ଼ି ଧାଡ଼ି । (ଘୋଷା)

ଗୋଡ଼ି ମାଟି ଆଉ        ପିଚୁ ପଡ଼ି ଥିଲେ –
ସଡ଼କ ହୁଅଇ ପକ୍କା,
ସେହି ସଡ଼କରେ        ଯେତେ ଦୂର ଗଲେ –
ଲାଗେ ନାହିଁ ସିନା ଥକ୍କା ।
ଆମରି ଦାଣ୍ଡରେ        ଶଗଡ଼ ଚାଲଇ
ବଳଦ ନିଅନ୍ତି ଭିଡ଼ି । ।୧।

ସୁନ୍ଦର ଚିକ୍କଣ        ଚଉଡ଼ା ସଡ଼କ–
ବଢ଼ାଏ ଗାଡ଼ିର ଗତି,
ଗାଡ଼ି ଚକ ସିନା        ପ୍ରଗତି ପ୍ରତୀକ–
ମୂଳଟି ସୁରକ୍ଷା ନୀତି ।
ନିୟମ ନମାନି        ଆନ ମନା ହେଲେ–
ଜୀବନଟି ଯାଏ ଉଡ଼ି । ।୨।





# ଶିଶୁ ଗୀତିକା

## ଆମରି ଟିକି ବହି

ଆମରି ଟିକି ବହିରେ ପିଲେ -
ଆମରି ଟିକି ବହି,
ରୂପଟି ସିନା ଛୋଟିଆ ହେଲେ -
ତା' ସରି ନାହିଁ କେହିରେ । (ଘୋଷା)

ବହିଟି ଆମ ଜ୍ଞାନର ହାଟ,
ଦେଖାଏ ସିଏ ବିଜ୍ଞାନ ବାଟ ।
କଥା କାହାଣୀ ଗୀତି କବିତା-
ମନକୁ ନିଏ ମୋହିରେ । ୧ ।

ଅନ୍ଧାରେ ସିଏ ଆଲୋକ ଢାଳି,
ଛବି ଦେଖାଏ ଭଳିକି ଭଳି ।
ବହିକୁ ଯିଏ ଆଦର କରେ -
ମଣିଷ ହୁଏ ସେହିରେ । ୨ ।

ବହିଟି ସିନା ସବୁରି ସାଥି,
ବତେଇ ଦିଏ ନୀତି ଅନୀତି ।
କେତେ ଅଜଣା ଅଦେଖା କଥା-
କାନରେ ଦିଏ କହିରେ । ୩ ।





# ଆକାଶ ତଳେ

ଆକାଶ ତଳେ ବଉଦ ଖେଳେ–
ଜହ୍ନର ଲୁଚକାଳି,
ଏହି ଆକାଶେ ତାରକା ଦିଶେ –
କେତେ ଯେ ଭଳି ଭଳି । (ଘୋଷା)

ପୂରୁବ ଦିଗେ ସୂରୁଜ ଉଏଁ–
ଆକାଶ ବୁକୁ ଚିରି,
ଗୋଧୂଳି ବେଳେ ପାହାଡ଼ ତଳେ–
ମଉନେ ଯାଏ ବୁଡ଼ି ।
ସବୁରି ବଳ ବଢ଼ାଏ ସିନା–
କିରଣ ଢାଳି ଢାଳି ।୧।

ବଡ଼ ଉଜ୍ଜ୍ୱଳ ପାହାନ୍ତି ତାରା,
ଉଲକା ଉଡ଼େ ନଦିଏ ଧରା ।
କେତେ ତାରକା ସୂରୁଜ ପାଶେ–
ଥାଆନ୍ତି ଜଳି ଜଳି । ।୨।

ମଙ୍ଗଳ ଗ୍ରହ ନାଲିଆ ଦିଶେ,
ଉତ୍ତର ଦିଗେ ଧ୍ରୁବ ହସେ ।
କିଏ ଗଢ଼ିଛି ଆକାଶେ ତାରା–
ମନରେ ହୁଏ ଭାଳି । ।୩।





## ଆମ ବାଘମାମୁ

ଡକ୍ଟର କୃତ୍ତିବାସ ନାୟକ

ଆମ ବାଘମାମୁ  ବଣର ରଜା,
ମାମୁଘର ଭୋଜି  ଲାଗିବ ମଜା ।

ବିଲୁଆ ନନାଟି  ବଜାଏ ବାଜା,
ପାନ ଭାଙ୍ଗେ ବସି  ଠେକୁଆ ଅଜା ।

ଓଟର ପିଠିରେ  ଉଠିଛି କୁଜ,
ଘୋଡ଼ା ନାଚ ପାଇଁ  ହେଇଛି ସଜ ।

ଗଛରେ ଲାଗିଛି  ଭାଲୁର ଦୋଳି,
ଦୋଳି ଝୁଲାଇଛି  ଦାଢ଼ିଆ ଛେଳି ।

ହାତୀ ମଉସାର  ଶୁଣ୍ଢଟା ବଡ଼,
ବର ଡାଳେ ଭାଙ୍ଗେ  ମଅଡ଼ ମଡ଼ ।

ଗଧ ଅଜା ଗୀତ  ଭାରି ବଢ଼ିଆ,
ମଇଁଷି ଖୋଳୁଛି  ପଙ୍କ ଗଡ଼ିଆ ।

ନଡ଼ିଆ ଗଛରେ  ମାଙ୍କଡ଼ ଚଢ଼େ,
ଘୁଷୁରି ପ୍ରକୃତି  ନାଳରେ ଗଡ଼େ ।

ଦୁଧ ଦହି ହାଣ୍ଡି  ଆଣିଛି ଗାଈ,
ଗଧିଆ ଆସିଛି  କୁଣିଆ ହେଇ ।

ବାଘମାମୁ ଭୋଜି  ଖାଇବ ଆସ,
ଭୋଜି ଖାଇ ସାରି  ପଢ଼ାରେ ବସ ।





# ଫୁଲଟିଏ ମୁଁ

ଡକ୍ଟର କୃତ୍ତିବାସ ନାୟକ

ଫୁଲଟିଏ ମୁଁ ଫୁଲଟିଏ,
ସକାଳେ କଢ଼ି ଦିନରେ ଫୁଟେ –
ବାସରେ ଦିଗ ଚହଟାଏ ।
ବଗିଚାରୁ ମୋତେ ନିଏ ତୋଳି,
ଫୁଲମାଳ ଗଢ଼ିଦିଏ ମାଳି ।
ମହତ ଜନ ନେତା ଦେବତା –
ଗଳାରେ ମୁହିଁ ଶୋଭାପାଏ । ।ଘୋଷା।

ଦୀପଟିଏ ମୁଁ ଦୀପଟିଏ,
ଅନ୍ଧାର ନେଇ ଆଲୋକ ଢ଼ାଳେ –
ସଳିତା ମୋର ଜଳୁଥାଏ ।
ମାଟିରେ ଗଢ଼ା ଦେହ ମୋର,
ତେଲରେ ଭରା ଜର ଜର।
ପର ଆପଣା ନାହିଁ ତ ଜଣା –
ଆଲୋକ ବାଣ୍ଟି ବାଣ୍ଟି ଯାଏ । ।୧।

ଧୂପଟିଏ ମୁଁ ଧୂପଟିଏ,
ନିଜକୁ ଜାଳି ବାସ ବିତରେ –
ଜଳି ଜଳି ମୁଁ ସୁଖପାଏ।
ଝୁଣା ମହମ କାଠି ବାସ,
ଜଳିଲେ ମୁଖେ ଫୁଟେ ହସ ।
ଦେବାଳୟରେ ସେବକ ମୁହିଁ –
ମୋ ସରି ସୁଖୀ ଅଛି କିଏ ? ।୩।





## ଶିଶୁ ଗୀତିକା



ଡକ୍ଟର କୃତ୍ତିବାସ ନାୟକ

# ଭାରି ମଜା ଲାଗେ

ଭାରି ମଜା ଲାଗେ ସାଙ୍ଗ ସାଥୀ ସଂଗେ –
ଆଜି ରବିବାର ଦିନ,
ପାଠ ଚିନ୍ତା ନାହିଁ ଖାତା ଦେଖା ନାହିଁ –
ଖେଳ ପଡ଼ିଆରେ ମନ । ।ଘୋଷା।

ସୋମବାର ସିନା ଶିବଙ୍କର ବାର –
ଉପବାସ କରେ ଆଈ,
ମଙ୍ଗଳବାରକୁ ହାଟ ବସି ଗଲେ –
ଅଜା ଆଣିଦେବେ ବହି ।
ମାମୁ ଆସିଥିବେ ବୁଧବାର ଦିନ –
ମନ ହୁଏ ଛନ ଛନ । ।୧।

ଦେବତାଙ୍କ ଗୁରୁ ବୃହସ୍ପତି ନାମେ –
ପଢ଼େ ଗୁରୁବାର ସିନା,
ଶୁକ୍ରବାର ପୁଣି ଶୁକ୍ର ଗୁରୁଙ୍କର –
ଶୁଭଦିନ ବୋଲି ଗଣା ।
ଅଧା ଛୁଟି ମଜା ଆଣେ ଶନିବାର –
ମନ କରି ଦିଏ ଟାଣ । ।୨।







## ବଣ ଭୋଜି



ବଣଭୋଜି ଆମେ ଯାଇଥିଲୁ,
ପିଲାଙ୍କୁ ସାଙ୍ଗରେ ନେଇଥିଲୁ ।
ବଡ଼ଗଛ ଖୋଜି କଲୁ ବଣଭୋଜି –
ନେଇଥିବା ଚିଜ ଖାଇଥିଲୁ । ।ଘୋଷା।

ଅଜା ଆଈ ଠାରୁ ଶୁଣିଥିଲୁ,
ବହିରେ ଆଗରୁ ପଢ଼ିଥିଲୁ,
ବଣ ଭିତରଟା ଘନ ଅନ୍ଧକାର –
ବୁଲୁଥିବେ ଖାଲି ବାଘ–ଭାଲୁ । ।୧।

ବାଆ ବହେ ସେଠି ସୁଲୁ ସୁଲୁ,
ପାଣି ପଡୁଥାଏ ଦୁଲୁ ଦୁଲୁ ।
ଶାଳ ଶାଗୁଆନ ଶିଆଳି ଲତାରେ –
ଛନ୍ଦି ହେଇଯିବ ଟାଲୁଟାଲୁ । ।୨।

ମନେ ମନେ ଡରି ଯାଇଥିଲୁ,
ମନକଥା କହି ଦେଇଥିଲୁ ।
ଦେଖିଲୁ ବଣଟା ଗାଆଁ ପରି ସଫା –
ସଭିଁଏ ହତାଶ ହେଇଥିଲୁ । ।୩।

ସେଦିନ ଶପଥ ନେଇଥିଲୁ,
ଗାଆଁ ପାଖେ ଗଛ ଲଗାଇଲୁ ।
ଅଳ୍ପ ଦିନରେ ଗଛ ବଢ଼ି ଗଲା–
ବଣଭୋଜି ମଜା ପାଇଗଲୁ । ।୪।







## ଖୋଲା ଆକାଶେ

ଡକ୍ଟର କୃତ୍ତିବାସ ନାୟକ

ଖୋଲା ଆକାଶେ ଉଡୁଛି ମୁହିଁ –
ଝାଡୁଛି ଡେଣା ପର,
ରଂଗ ରଂଗିଆ ଟିକି ଚଢ଼େଇ –
ବଣ ମୂଲକେ ଘର । ।ଘୋଷା।

ଜାଣିଛ ଭାଇ ବଣଟି ଏବେ –
ହେଲାଣି ନାଉଖାର,
ମଣିଷ ଆଜି ସାଧୁଛି ଦାଉ –
କାଟିଛି ଗଛବେର ।
ସାଙ୍ଗ ସାଥୀ ମୋ ଗଲେଣି ହଜି –
ଲାଗୁଛି ମୋତେ ଡର । ।୧।

ମଣିଷ ଏବେ ମାଡ଼ି ବସିଛି –
ଆମରି ବଣଭୂଇଁ,
କେଉଁଠି ଆମେ ରହିବୁ କୁହ –
ବଞ୍ଚିବୁ କିସ ଖାଇ ।
ଜଙ୍ଗଲ ଆଜି ସାଜିଛି ମରୁ –
ନାହିଁ କେଉଁଠି ଝର । ।୨।

ଶୁଣିବ ଭାଇ କଥା ପଦିଏ –
କରୁଛି ନିବେଦନ,
ଲଗାଇ ଦିଅ ଗଛ ପତର –
ଗହଳ କରି ବଣ ।
ଗଢ଼ିବି ବସା ଫୁଟିବ ଅଣ୍ଡା –
ରହିବେ ଛୁଆ ମୋର । ।୩।





# ଫୁଲରେ ଯଦି

ଡକ୍ଟର କୃତ୍ତିବାସ ନାୟକ

ଫୁଲରେ ଯଦି ନଥାଏ ବାସ –
ଆଦର ମିଳେ ନାହିଁ,
ସଜେଇ ହେଲେ ନିଜ ରୂପକୁ –
ହୁଏ କି ବଡ଼ କେହି ? ।ଘୋଷା।

ଦେହ ବଳକୁ କିଏ ପଚାରେ –
ବଡ଼ ମନର ବଳ,
ମନର ବଳେ କରି ପାରିବା –
ଦୁନିଆ ଟଳମଳ ।
ପାଠ ସାଂଗକୁ ଶାଠ ନଥିଲେ –
ଜିତି ପାରିବ କାହିଁ ? ।୧।

ସହିବା ଯିଏ ଜାଣିନି ତା'ର –
ହାରିବା ହୁଏ ସାର,
ଜିଣିବ ସିଏ ନିଜ ଉପରେ –
ଭରସା ଥାଏ ଯା'ର ।
କାମ ନକରି ଫଳରେ ଆଶା –
ନିରାଶ ହେବ ସେହି । ।୨।

ପର ଦରବେ ରଖିଲେ ମନ
ମିଳଇ ଖାଲି ଦୁଃଖ,
ମାଗି ଖାଇବା ସବୁଠୁ ହୀନ –
ଆସିବ କାହୁଁ ସୁଖ ?
ବିପଦ ବେଳେ ସାହା ନହେଲେ –
କି' ଲାଭ ବଂଧୁ ଥାଇ ! ।୩।







## ଶୁଣିବ ପିଲାଏ

ଡକ୍ଟର କୃତ୍ତିବାସ ନାୟକ

ଶୁଣିବ ପିଲାଏ ଆସରେ,
ଲେଖି ରଖିଥିବ ପାଖରେ ।
ଜୀବନଟି ନାଶ ହୋଇଥାଏ ସିନା –
ଖଳ ଲୋକ ସଂଗ–ବାସରେ । ।ଘୋଷା।

ନିଆଁ ଲାଗିଗଲେ ଜଂଗଲ ନାଶ,
ଜହ୍ନ ଆଲୁଅକୁ ବାରିଦ ଫାଶ ।
କୁହୁଡ଼ିରେ ଆମ୍ବ କଷି ନାଶ ଯାଏ –
ଘାସ ନାଶ ଯାଏ ଚାଷରେ । ।୧।

ହାଟ ବଜାରରେ ପାଠର ନାଶ,
ମରମ କଥାଟି ମନକୁ ବିଷ ।
କଥାର ମହତ ନାଶ ହୋଇଯାଏ –
କଥା କୁହା ଲୋକ ହସରେ । ।୨।

କୁସଂଗରୁ ବୁଦ୍ଧି ହୁଅଇ ନାଶ,
ଆଳସ୍ୟ ଆଣଇ ସରବ ନାଶ ।
ଋଣ, ରୋଗ, ଚିନ୍ତା ବଳ ନାଶ କରେ –
ଗୀତ ନାଶ ଯାଏ କାଶରେ । ।୩।





## ଜହ୍ନମାମୁ ଶୁଣ

ଜହ୍ନମାମୁ ଶୁଣ ଜହ୍ନମାମୁ –
କୁହ କିଏ ହେବ ତୁମ ପରି,
ଘରକୁ ଡାକିଲେ କେବେତ ଆସୁନା –
ଆକାଶେ ରହୁଛ ଲାଜ କରି । ।ଘୋଷା।

ଚାଲୁଥିଲେ ମୁହିଁ ଲୁଚି ଲୁଚି
ଆସିଯାଅ ତୁମେ ଛପି ଛପି ।
ଠିଆ ହେଇଗଲେ ତୁମେ ରହିଯାଅ –
ଚାହିଁ ଦେଇ ହସ କିରିକିରି । ।୧।

ତୁମେ ତ ଜାଣିଛ ଲୁଚକାଳି,
ଥକି ପଡ଼ିଲ କି ଖେଳି ଖେଳି।
ତଳକୁ ଆସିଲେ ଶିଖାଇ ଦିଅନ୍ତି –
କେତେ ନୂଆ ଖେଳ ବୋହୂଚୋରୀ । ।୨।

ତୁମ ରାଇଜକୁ ଯିବି ଉଡ଼ି,
ରକେଟ ଚାଲିବ ଧାଡ଼ି ଧାଡ଼ି ।
ନାହିଁ ନାହିଁ କଲେ ଛାଡ଼ିବିନି ମାମୁ –
ସାଂଗରେ ଆଣିବି ହାତଧରି । ।୩।





ଡକ୍ଟର କୃତ୍ତିବାସ ନାୟକ

# ଆସ – ଆସରେ

ଆସ – ଆସରେ ଖେଳିବା ହୋଲି,
ହାତେ – ଧରି ରଂଗ ପିଚ୍‌କାରୀ । ।ଘୋଷା।

ଦୋଳ ପଡ଼ିଆରେ ବାଜୁଛି ବାଜା,
ଠାକୁର ବିମାନ ହୋଇଛି ସଜା ।
ମେଲଣ ଦେଖିଲେ ମନ ଭରି ଯାଏ –
ସବୁ ଦୁଃଖ–ଚିନ୍ତା ଯାଏ ଚାଲି । ।୧।

ବରଷକ ପରେ ଆସିଛି ହୋଲି,
ରଂଗରେ ମୁହଁକୁ କରିବା ନାଲି ।
କାନ୍ଧରେ ବସାଇ ଠାକୁର ବିମାନ –
ଆମେ ନାଚି ଯିବା ଝୁଲି ଝୁଲି । ।୨।

ପିଠା ପଣା ଖିରି ମିଠେଇ ଖାଇ,
ଗାଇଲେ ଓଗାଳ ଗୋପାଳ ଭାଇ ।
ଦୋଳ ଯାତରାରେ ଫଗୁଣ ନାଚୁଛି –
ପତରେ ପତରେ ରଂଗ ବୋଳି । ।୩।





# ଆକାଶେ ଥାଇ

ଡକ୍ଟର କୃତ୍ତିବାସ ନାୟକ

ଆକାଶେ ଥାଇ ଜହ୍ନ କହିଲା –
କହିବ କଥା ଧୀରେ,
କୋଇଲି ମୋତେ ଶିଖାଇ ଦେଲା –
ଗାଇବ ଗୀତ ସୁରେ । ।ଘୋଷା।

ସେବାରେ ମନ ଦେବରେ ଧନ –
କହିଲା ମୋତେ ଗଛ,
ପର ସୁଖରେ ନାଚେ ମୟୂର
ଶିଖାଇ ଦେଲା ନାଚ ।
ଟିକି ପତଙ୍ଗ ମହୁମାଛିଟି –
ମହତ କାମ କରେ । । ୧ ।

ମାଟି ମା' କହେ ସହିବ ଯିଏ –
ହୋଇବ ସିଏ ବଡ଼,
ଆକାଶ କହେ ଉଚ୍ଚକୁ ଗଲେ –
ତୁଚ୍ଛ ଗରବ ଛାଡ଼।
ପବନ କହେ ଜୀବନ ନେଇ –
ବାଣ୍ଟିବି ଘରେ ଘରେ । ।୨।







## କର୍ମବୀର ହେ

କର୍ମବୀର ହେ – ଧର୍ମ ବୀର ହେ –
ଜନ୍ମକୁ କରି ଧନ୍ୟ,
ଆତ୍ମ ସ୍ୱାର୍ଥକୁ ଆହୁତି ଦେଇ –
ଅର୍ଜିଛ ମହାପୁଣ୍ୟ । ।।ଘୋଷା।।

ଜାତିର କର୍ଣ୍ଣେ ହୃଦୟ ପ୍ରାଣେ –
ଢାଳିଲ ମହାମନ୍ତ୍ର,
ରାଜ୍ୟ ପ୍ରଗତି ଶିଳ୍ପ ସମୃଦ୍ଧି –
ସବୁରି ମୂଳେ ଯନ୍ତ୍ର।
ମିଗ୍ ବିମାନ ଶତ୍ରୁ ସୈନ୍ୟ–
ଗର୍ବକୁ କରେ ଚୂର୍ଣ୍ଣ । ।୧।

ସ୍ପନ୍ଦିତ କରି ହୃଦୟ ତନ୍ତ୍ରୀ–
ମନ୍ତ୍ରିତ କୋଟି ପ୍ରାଣ,
ଜାଗ୍ରତ କଲ ଚିନ୍ତା–ଚେତନା–
ଆତ୍ମାର ସ୍ୱାଭିମାନ।
ଶିକ୍ଷାରେ ଭରି ନୂତନ ସ୍ୱାଦ–
ଫୁଙ୍କିଲ ପାଞ୍ଚଜନ୍ୟ । ।୨।

ସାର୍ଥକ କଲ ବିଜୟାନନ୍ଦ–
ନତ ମସ୍ତକ ବିଶ୍ୱ,
ଉତ୍କଳ ବୀର କଳିଙ୍ଗ ଶ୍ରେଷ୍ଠ–
ରଖିଲ କୀର୍ତ୍ତି ଯଶ।
ରାଉରକେଲା ପାରାଦ୍ୱୀପରେ –
ସ୍ୱପ୍ନ ହୋଇଛି ପୂର୍ଣ୍ଣ । ।୩।

(ବିଜୁ ପଟନାୟକଙ୍କ ଜୟନ୍ତି ଓ ଶ୍ରାଦ୍ଧ ଅବସର ଗୀତ)





## ଶୁଭ ଲଗନେ

ଅତିଥି ଦେବୋ ଭବ

ଶୁଭ ଲଗନେ ଅତିଥି –
ଘେନ ଆମ ପ୍ରଣାମ,
ଅତିଥି ସେବାରେ ଇଚ୍ଛା–
ହେଇଯାଉ ପୂରଣ । ।ଘୋଷା।

ଅତିଥି ଆମର ଗୁରୁ–
ଦେବତାଙ୍କ ସମାନ,
କୁନି କୁନି ଟିକି ହାତେ–
ତୋଳି ଦେବୁ ସୁମନ।
ମଥାରେ ଚନ୍ଦନ ଦେଇ –
କରିନେବୁ ବରଣ । ।୧।

ତୁମରି ଆଶିଷ ଝରି–
ପଡୁ ହୋଇ ବରଷା,
ତୁମ ଉପଦେଶ ହେଉ–
ବିପଦରେ ଭରସା ।
ତୁମ ଆଗମନେ ଭରି–
ଯାଉ ମନ ପରାଣ । ।୨।

*(ବିଭିନ୍ନ ଉତ୍ସବରେ ଅତିଥିଙ୍କୁ ସ୍ୱାଗତ ଜଣାଇବା ଗୀତ)*





ଡକ୍ଟର କୃତ୍ତିବାସ ନାୟକ

## ଅଭିନନ୍ଦନ

ଅଭିନନ୍ଦନ – ଅଭିନନ୍ଦନ,
ଶୁଭଦିନ – ଅଭିନନ୍ଦନ । ।ଘୋଷା।

ଏହି ଶୁଭ ଦିନ ଶୁଭ ଲଗନରେ –
ସବୁ ଶୁଭଙ୍କରୀ ହେଉ,
ତୁମରି କାରଣେ ମଙ୍ଗଳମୟର –
ଆଶିଷ ବରଷି ଯାଉ।
ମଥାରେ ତୁମର ଝରିପଡୁ ସଦା–
ଆକାଶରୁ ଫୁଲଚନ୍ଦନ। ।୧।

ତୁମରି ହାତର କୋମଳ ପରଶେ –
ପାଷାଣ ତରଳି ଯାଉ,
ତୁମରି ତୁଣ୍ଡର ମଧୁର ଭାଷାରେ –
ଦୁଃଖୀ ଦୁଃଖ ଦୂର ହେଉ।
ଭଲ ପାଇବାର ତୁମ ବେଣୁ ସ୍ୱନେ–
ଖୋଲି ଯାଉ ବାଧା ବନ୍ଧନ।।୨।

*(ବିଭିନ୍ନ ଅବସର ଯଥା – ଜନ୍ମ ଦିନ, ବଡଦିନ ଓ*
*ସ୍ୱତନ୍ତ୍ର ଉତ୍ସବରେ ଅଭିନନ୍ଦନ ଜଣାଇବା ଗୀତ)*





# ଶୁଣିଛୁ ଆମେ

ଡକ୍ଟର କୃତ୍ତିବାସ ନାୟକ

ଶୁଣିଛୁ ଆମେ ବିଜ୍ଞାନ କଥା –
ଜାଣିଛୁ ତା'ର ବଳ,
ପଢ଼ିଛୁ ଆମେ ବିଜ୍ଞାନ ପାଠ–
ପାଇଛୁ ତା'ର ଫଳ।
।ଘୋଷା।

ଭାବନି କେହି ଛୋଟିଆ ଆମେ –
ଏଡ଼େ ବକଟେ ପିଲା,
କାହାଣୀ କହି ଭୁଲାଇ ଦେଇ–
କରନି ଆଉ ଗେହ୍ଲା।
ଅଳପ ଦିନେ ବୁଝୁଛୁ ଆମେ–
କେଉଁଟା ଭଲ ଭେଲ ।।୧।

କୁହନି ଆଉ ପାରିବୁ ନାହିଁ–
ସୁଯୋଗ ଟିକେ ଦିଅ,
ତୁମକୁ ଯାହା ଅଜଣା ତାହା–
ଆମଠୁଁ ଶିଖି ନିଅ।
ବିଜ୍ଞାନ ବଳେ କଠିନ କାମ–
ବାମ ହାତର ଖେଳ । ।୨।





## ସଂଜ ଗଡ଼ିଗଲା

ସଂଜ ଗଡ଼ିଗଲା ଅନ୍ଧାର ବଢ଼ିଲା-
କମିଗଲା କୋଳାହଳ,
ଖୋଲା ଆକାଶରେ ମିଟିକା ମାରିଲେ-
ଜହ୍ନ ସଂଗେ ତାରା ମାଳ ।
।ଘୋଷା।

ଶୁଭୁ ନାହିଁ ଆଉ ପକ୍ଷୀ କଳରବ-
ବିଲୁଆ ଛାଡ଼ନ୍ତି ରଡ଼ି,
ଶିକାର ଆଶାରେ ପେଚା କୁହ୍ଲାଉଛି-
ଏ'ଡାଳ ସେ ଡାଳ ଉଡ଼ି।
ଦୂରରୁ ଶୁଭୁଛି କୁକୁର ଭୁକୁଛି-
କେବେ ପୁଣି ମାଡ଼ ଗୋଳ । ।୧।

ଅଜା ଆଈ ନାତି ନାତୁଣିଙ୍କୁ ଡାକି-
ବିଛେଇ ଦେଲେଣି ସପ,
କୁନି କୁନି ପିଲା କରନ୍ତି ଜିଗର-
ଶୁଣିବେ ବାଇଆ ଗପ।
ବିଲେଇ ନାନୀକୁ ନିଦ ଆସେ ନାହିଁ-
ହେଉଛି ଉପର ତଳ। ।୨।





## ପାହାଡ଼ ତଳେ

ଡକ୍ଟର କୃତ୍ତିବାସ ନାୟକ

ପାହାଡ଼ ତଳେ ନାଲି ସୂରୁଜ –
ମଉନେ ଗଲେ ବୁଡ଼ି,
ଆକାଶ ବୁକେ ଚହଟି ଉଠେ–
କେତେ ରଂଗର ଛବି ।
।ଘୋଷା।

ଗୋଠ ବାହୁଡ଼ା ଗାଈଙ୍କୁ ଦେଖି–
ବାଛୁରି ଛାଡ଼େ ରଡ଼ି,
ହଳିଆ ଭାଇ ବିଲରୁ ଫେରି–
ଖାଇଲେ ଚୂଡ଼ା ମୁଢ଼ି।
ଅନ୍ଧାର ଦେଖି ବିଲୁଆ ଚାଲେ–
କଙ୍କଡ଼ା କଥା ଭାବି । ।୧।

ବାହୁଡ଼ି ଗଲେ ନିଜ ବସାକୁ–
କାଉ କୋଇଲି ଶୁଆ,
ସଜ ହୋଇଲେ ଆହାର ଖୋଜି–
ବାଦୁଡ଼ି ଚେମାଣିଆଁ।
ଚଉଁରା ମୂଳେ ସଂଜ ଲଗାଏ–
ନୂଆ ଭାଉଜ ସାଜି । ।୨।





## ରାତି ପାହିଲା

ଡକ୍ଟର କୃତ୍ତିବାସ ନାୟକ

ରାତି ପାହିଲା ସକାଳ ହେଲା–
ଉଇଁ ଆସିଲେ ସୂରୁଜ,
ନୀଳ ଆକାଶେ ବଣ ପାହାଡ଼େ–
ବୁଣି ସୁନାର ମୁରୁଜ । ।ଘୋଷା।

ଘରକୁ ଘର ଉଡ଼ି ଉଡ଼ିକା
କାଉ ଡାକିଲା କା–କା,
କୁନି ଚଢ଼େଇ ମାଆ ପାଖରେ –
ହୋଇଲେ ଖାଲି ଚେଁ – ଚାଁ।
ତରବରକି ମାଠିଆ ଧରି –
ଗାଧୋଇ ଯାଏ ଭାଉଜ । ।୧।

ବାଜି ଉଠିଲା ମନ୍ଦିରେ ଘଣ୍ଟା–
ବାଛୁରି ଡାକେ ହଂମା,
ଆମକୁ ମାଆ କହିଲେ ପିଲେ –
ହେଲା କରନି ଜମା।
ବଡ଼ି ସକାଳୁ ପଢ଼ି ବସିଲେ–
ପାଠ ହୁଅଇ ସହଜ । ।୨।





# ସାରେ ଗାମା

ଡକ୍ଟର କୃତ୍ତିବାସ ନାୟକ

ସାରେ ଗାମା ପାଧା ନିସା,
ସାନି ଧାପା ମାଗା ରେସା ।
ଗାଇବା ଗୀତ – ମଧୁର ସୁରେ–
ବରଷି ଯିବ ବରଷା ।
।ଘୋଷା ।

ସା' କହୁଛି – ଗୀତ ସାଗରେ–
ଖୋଜିବା ଆସ ରତନ,
ରେ' କହୁଛି – ସୁରରେ ତାଳ–
ହୋଇବ ଆଜି ମିଳନ ।
ଗା' କହିଲା – ଗାଇଲେ ଗୀତ–
ଲୟରେ ରଖ ଭରସା । ।୧ ।

ମା' ର ସୁର ବଡ଼ ମଧୁର
ପା' ଧରିଲା ପାଳି,
ଧା' ନାଚିଲା ଧା ଧିନି ଧିନା–
ନି' ମାରିଲା ତାଳି ।
ଗୀତରେ ନାଚ ବାଇଦ ମିଶି–
ସଂଗୀତ ହେଲା – ସରସା । ।୨ ।





# ଶିଶୁ ଗୀତିକା

## ସତ୍ୟ ହେ ତୁମେ

ଡକ୍ଟର କୃତ୍ତିବାସ ନାୟକ

ସତ୍ୟ ହେ ତୁମେ- ସାଗରଠୁଁ ବଡ଼ -
ଆକାଶ ଠାରୁ ମହାନ,
ମଥାରେ ଟେକିଛି ଧର୍ମର ମୁକୁଟ -
ବିଜୟ ତୁମ ବାହାନ । ।ଘୋଷା।

ସୂର୍ଯ୍ୟ ସମାନ ନୀତିବାନ ପୁଣି -
ପବନ ପରାଏ ଗତି,
ଜଳଧାରା ପରି ସରଳ ତରଳ -
ପଥରଠୁଁ ଟାଣ ଛାତି ।

କୁହୁଡି ବାଦଲ ହଟେଇବା ପାଇଁ
ଧର୍ମକୁ କଲ ବହନ । ।୧।

ଜ୍ୟୋତି ରୂପେ ତୁମେ ବିରାଜିତ ହୋଇ -
ଆଲୋକ କର ପ୍ରକାଶ,
ସେହି ଆଲୋକରେ ଅଶାନ୍ତି ଜଂଜାଳ -
ଅଶିବ ହୁଅଇ ନାଶ ।
ତବ ଆଗମନେ ଅସତ୍ୟ ଅନ୍ୟାୟ -
କଳଙ୍କ ହୁଏ ଉଭାନ । ।୨।





# ବଦଳି ଗଲାଣି

ଡକ୍ଟର କୃତ୍ତିବାସ ନାୟକ

ବଦଳି ଗଲାଣି ସେଦିନ କାହାଣୀ–
ଶୁଣି ନିଅ ନୂଆ କଥା,
ପୁରୁଣା କଥାକୁ ଧରି ବସିଥିଲେ–
ହେବ ଖାଲି ମୁଣ୍ଡ ବଥା । ।ଘୋଷା।

ବଦଳୁଛି ଯୁଗ ବଦଳୁଛି ରୁଚି–
ବଦଳିବା ଆଧୁନିକ,
ଆଧୁନିକ ନାମେ ମୂଳ ତାଡ଼ି ଦେଲେ–
ଫଳ ହେବ ଖାଲି ଦୁଃଖ ।
ସେ ଦିନର ଯଶ ଆଜି ଅପରାଧ–
ବାଘ ହତ୍ୟାକାରୀ ଯଥା । ୧ ।

ଶୁଆ ପାଠ ପଢ଼ା ଚଳିବନି ଆଉ–
ଦେଖ ଏ'ଯୁଗର ରୀତି,
ରୀତି ନୀତି ନେଇ ଆଗେଇ ଚାଲିଲେ–
ନଥିବ ମନରେ ଭୀତି।
ସୂଚନା ବିଜ୍ଞାନ ଜାତିର ସମ୍ମାନ–
ଟେକିବ ଆମରି ମଥା । ।୨।





# ଶିଶୁ ଗୀତିକା

## ସୁନା ପିଲାଟି

ସୁନା ପିଲାଟି ହୋଇବ ଯିଏ–
ଶୁଣିବ ଆସ ଗୀତ,
ଗୀତର ସାର ବୁଝିଲେ ହେବ–
ଦେହ – ମନକୁ ହିତ । ।ଘୋଷା।

ଆଜିର କାମ ଏବେ କରିବା–
କାଲିର କାମ ଆଜି,
ଜଗତ ହିତେ ଜୀବନ ଆମ–
ଲଗାଇ ଦେବା ବାଜି।
ଅଳିକ ଏହି ସୁଖ ସଂପଦ –
ଅଥୟ କରେ ଚିତ୍ତ । ।୧।

ଅସାଧ୍ୟ ବୋଲି ନାହିଁ ଜଗତେ –
ବୁଦ୍ଧିରେ ସବୁ ବଶ,
ବିଜ୍ଞାନ ବଳେ ଅନ୍ଧ ବିଶ୍ୱାସ –
କରିପାରିବା ନାଶ।
ମହତ କାମେ ଅକ୍ଷମ ନୁହେଁ–
ଆମରି ଟିକି ହାତ। ।୨।
ପର ସୁଖରେ କାତର ଯିଏ –
ଅନ୍ୟକୁ ଦିଏ ଦୁଃଖ,
ପରୋପକାର ମଜା ଚାଖିନି–
ଜୀବନ ତା'ର ଧିକ।
ବିପଦେ ପଡ଼ି ହାରିବା ପଛେ–
ଛାଡ଼ିବା ନାହିଁ ସତ। ।୩।







## ମନକୁ କରିଛି

ଡକ୍ଟର କୃତ୍ତିବାସ ନାୟକ

ମନକୁ କରିଛି କଲମ ଗୋଟିଏ-
ଭରିଛି ମମତା କାଳି,
ଜୀବନ କାଗଜେ ଲେଖିଛି ଗୀତିକା-
ଭକତି ପ୍ରଦୀପ ଜାଳି । ।ଘୋଷା।

ପିତା ମାତା ଗୁରୁ ଶ୍ରୀଚରଣେ ମୋର-
ନଇଁ ପଡୁଥିବ ମଥା,
ତାଙ୍କରି ଆଶିଷ ବରଷିବ ହୋଇ-
ମଧୁଝରା ମିଠା କଥା।
କାହାରି ମନରେ ଦେବିନି କଷଣ-
ଦେବି ନିଜ ସୁଖ ବଳି । ।୧।

ସତ୍ୟ ଧର୍ମ ନ୍ୟାୟ ହେଉ ମୋର ଧେୟ-
ଶାନ୍ତି କରି ବିରାଜିତ,
ଜ୍ଞାନ ବିଜ୍ଞାନରେ ଅକ୍ଷୟ ଭଣ୍ଡାର-
ହେଉଥାଉ ବିକଶିତ।
ଜନମଭୂମି ମୋ ଜନନୀ ସେବାରେ-
ଦେବି ମୁଁ ରକତ ଢାଳି। ।୨।







## ନଡ଼ିଆ ମୋତେ

ନଡ଼ିଆ ମୋତେ ଶିଖାଇ ଦେଲା –
ଉପରେ ହେବ ଟାଣ,
ଖୋଲି ଦେଖିଲେ ନଡ଼ିଆ ପରି –
ନରମ ଥିବ ମନ । ।ଘୋଷା।

ଶିଖାଇ ଦିଏ ପାଚିଲା ଆମ୍ବ –
ରସାଳ ମିଠା ବେଲ,
ବିତରି ଦେବ ମଧୁର ଭାଷା –
ନିଜର ପୁଣ୍ୟ ଫଳ ।
ଅଳପ ମିଠା ଅଳପ ଖଟା –
କମଳା ଲେମ୍ବୁ ଗୁଣ । ।୧।

ଲଙ୍କା ମରିଚ ରାଗୁଛି ବୋଲି
ହୋଇ ଯାଇଛି ଛୋଟ,
ତା' ପରି କେବେ ହୋଇବି ନାହିଁ –
ଦେଖାଇ ନିଜ କୋପ ।
ଡାଳିମ୍ବ ମଂଜି ସଜେଇ ହୋଇ–
ଦିଏ ଶଙ୍ଖଳା ଜ୍ଞାନ । ।୨।





# ଭଲତ ଭଲ

ଡକ୍ଟର କୃତ୍ତିବାସ ନାୟକ

ଭଲ ତ ଭଲ ସବୁଠୁ ଭଲ –
କାହାଣୀ କୁହା ଅଜା,
ବାହାଘରକୁ ଝୋଟି ବଢ଼ିଆ –
ଥିଲେ ତେଲିଙ୍ଗି ବାଜା । ।ଘୋଷା।

କାମ ତ କାମ ବଢ଼ିଆ କାମ –
ପରର ଉପକାର,
ଅସଲ ସେବା କରି ପାରିବା –
ନଥିଲେ ଅହଂକାର ।
ମଜା ତ ମଜା ସବୁଠୁ ମଜା –
ବାଣ୍ଟି ଖାଇବା ମଜା । ।୧।

ରୋଗ ତ ରୋଗ ସବୁଠୁ ବଡ଼
ରୋଗଟି ହେଲା ଲୋଭ,
ଲୋଭରୁ ପାପ ପାପରୁ ଦୁଃଖ –
ମିଳଇ ପରାଭବ ।
ନିଜକୁ ଯିଏ – ମଣଇ ଶିଷ୍ୟ –
ପାଏ ସେ ଗୁରୁ ପୂଜା । ।୨।





## ଶିଶୁ ଗୀତିକା

# ଦେଖିଛ କି ପିଲେ

ଡକ୍ଟର କୃତିବାସ ନାୟକ

ଦେଖିଛ କି ପିଲେ ଦେଖିଛ କି,
ଚେଇଁକି ସପନ ଦେଖିଛ କି?
ବଡ଼ ହେବା ପାଇଁ ଉଚ୍ଚ ଆଶା ନେଇ -
ସପନର ଫଳ ଚାଖିଛ କି ?
।ଘୋଷା ।

ପରିଶ୍ରମ ଫଳ ବଡ଼ ମିଠା,
ମହତ କାମଟି ନୁହେଁ ବୃଥା ।
ଅନ୍ଧ ବିଶ୍ୱାସକୁ ହଟେଇବ,
ବିଜ୍ଞାନ ବାଟରେ ଆଗେଇବ ।
ଗୁରୁଙ୍କ ଆଦେଶ ହିତ ଉପଦେଶ –
ଭଲ କଥା ମନେ ରଖିଛ କି? ।୧ ।

ବିପଦେ କାତର ହେବ ନାହିଁ,
ଧନ ଦେଖି ଭୁଲି ଯିବ ନାହିଁ ।
ବୁଝ ବା ନ ବୁଝ ପଢ଼ ଗୀତା,
ରୁଚୁ ବା ନରୁଚୁ ଖାଅ ପିତା ।
ପର ଉପକାର ଜୀବେ ଦୟା ଭାବ–
ମନ ପ୍ରାଣେ କେବେ ମାଖିଛ କି? ।୨ ।







## ବେଙ୍ଗ କହିଲା

ବେଙ୍ଗ କହିଲା ବେଙ୍ଗୁଲି ରାଣୀ–
କହିବୁ କଥାଟିଏ,
ଆକାଶ ଦେଶୁ ବରଷା ପାଣି –
ଆଣି ଦେଉଛି କିଏ? ।ଘୋଷା।

ବେଙ୍ଗୁଲି କହେ ଆମରି ଗୀତ –
ଶୁଣିଲେ ଇନ୍ଦ୍ର ରାଜା,
ଢାଳି ଦିଅନ୍ତି ବରଷା ପାଣି–
ବାଜେ ଡମ୍ବରୁ ବାଜା।
ଆମରି ପାଇଁ କଳା ବାଦଲ –
ମେଘ ବରଷା ହୁଏ। ।୧।

ବେଙ୍ଗ କହିଲା ବେଙ୍ଗୁଲି ଶୁଣ–
ସେ କଥା ସତ ନୁହେଁ,
ନଈ ପୋଖରୀ ସାଗର ପାଣି –
ସୂରୁଜ ଶୋଷି ନିଏ।
ଭସା ବାଦଲ ଶୀତଳ ହେଲେ–
ମେଘ ବରଷି ଯାଏ । ।୨।

ପ୍ରକୃତି ରାଣୀ ବଡ଼ ଦୟାଳୁ–
ବିତରି ଦିଏ ଜଳ,
ପ୍ରାଣୀର ପ୍ରାଣ ଜୀବ ଜୀବନ –
ଗଛରେ ଫଳେ ଫଳ।
ବାଦଲ ସଂଗେ ବାଦଲ ବାଜି –
ଶବଦ ହେଉଥାଏ । ।୩।





## ଡକ୍ଟର କୃତ୍ତିବାସ ନାୟକ

ଗ୍ରାମ : ଏକତଳା, ପୋ : ରାଜକନିକା
ଜିଲା - କେନ୍ଦ୍ରାପଡ଼ା

ଡକ୍ଟର ନାୟକ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବେ କାର୍ଯ୍ୟରତ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚାଳନା କରି ସେ ସଫଳତା ହାସଲ କରିଛନ୍ତି । ସେ ଜାତୀୟ ଶିଶୁ ସାହିତ୍ୟ (୧୯୯୨-୯୩) ସମେତ ଅନେକ ରାଜ୍ୟସ୍ତରୀୟ ପୁରସ୍କାର ଓ ସମ୍ମାନ ଲାଭ କରିଛନ୍ତି । ତାଙ୍କର ୬୨ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇ ଯଥେଷ୍ଟ ଲୋକପ୍ରିୟତା ହାସଲ କରିଛି ।



ISBN 81-901015-14